# HYMNS

FOR

# SUNDAY SCHOOLS.

ବିଶ୍ରାମବାରର ପାଠଶାଳା ଗୀତ ।



ଯୀଶୁ କହିଲେ, "ତୁମ୍ଭେ ବାଳକ ଓ ଦୁଗ୍ଧପୋଷ୍ୟ ଶିଶୁମାନଙ୍କ ମୁଖରୁ ଆପଣାର ସ୍ତବ ପ୍ରକାଶ କରାଇଅଛ;" ଏହି କଥା କି ତୁମ୍ଭେମାନେ ପାଠ କରି ନାହିଁ ?

---


CUTTACK:

PRINTED AT THE ORISSA MISSION PRESS.

1892.

# SUNDAY SCHOOL HYMNS.

## ବିଶ୍ରାମବାରର ପାଠଶାଳା ଗୀତ ।

(ପିତାମାତାର ପ୍ରାର୍ଥନା ।)

ସ୍ୱର—କପାଁ ମନରେ ଏତେ ଚିନ୍ତା ଭାବନା ।

କର ଏହି ସାନ ପିଲଙ୍କୁ ଆଶିଷ ।
ପ୍ରଭୁ କର ତବ କରୁଣା ପ୍ରକାଶ । ଘୋଷା ।

ଆହେ ଈଶ୍ୱରଙ୍କ ପୁଏ ତୁମ୍ଭ ଛାମୁକୁ ।
ଆଣିଅଛୁଁ ଆମ୍ଭ ପ୍ରିୟତମ ଶିଶୁଙ୍କୁ ।
ଦୟା ହସ୍ତ ତୁମ୍ଭର    ଥୁଅ ତାଙ୍କ ଉପର ।
ଧର ତାଙ୍କୁ ଆଦର    ପ୍ରେମ ବାହୁ ତୁମ୍ଭର ।
ତବ ସ୍ୱର୍ଗୀୟ ଗୃହେ    ପ୍ରବେଶ ହେବା ଯାଏ ।
ପ୍ରେମ ବଚନେ ତାଙ୍କୁ ଆକର୍ଷ । ୧ ।

ଗୁରୁତର ଭାର ଅଟେ ଶିଶୁ ପାଳନ ।
ତେଣୁ ନରାଶ ହୁଏ ତା ଭାବିଲେ ମନ ।
ମାଏ ଏହା ନିଶ୍ଚିତ    ତୁମ୍ଭ ପ୍ରେମ ଅତ୍ୟନ୍ତ ।
ତୁମ୍ଭେ ପ୍ରାର୍ଥନା ଶୁଣି    ଉତ୍ତର ଦେବ ପୁଣି ।
ଏଣୁ ତୁମ୍ଭର ଗୃହେ    ତାଙ୍କ ପ୍ରବେଶ ଯାଏ ।
ପ୍ରେମ ବଚନେ ତାଙ୍କୁ ଆକର୍ଷ । ୨ ।

ଅଟୁଁ ଅମ୍ଭେମାନେ ନାନା ଦୋଷରେ ପୂର୍ଣ୍ଣ ।
ତାହା ଦେଖିବାକୁ ତାଙ୍କ ଦୃଷ୍ଟି ସୁତୀକ୍ଷ୍ଣ ।
କୁକର୍ମ ଅନୁବର୍ତ୍ତୀ    ଯେହେତୁ ସେହି ନୁହନ୍ତୁ ।

## ବିଶ୍ରାମବାରର ପାଠଶାଳା ଗୀତ ।

ଏଣୁ ତାହାଙ୍କ ଦୃଷ୍ଟି   ରଖ ତୁମ୍ଭର ପ୍ରତି ।
ତବ ସ୍ୱର୍ଗୀୟ ଗୃହେ   ପ୍ରବେଶ ହେବା ଯାଏ ।
ପ୍ରେମ ବଚନେ ତାଙ୍କୁ ଆକର୍ଷ । ୩ ।
ସହସ୍ର ସହସ୍ର ଭ୍ରାନ୍ତିଜନକ ପଥ ।
ସେ ଶିଶୁମାନଙ୍କ ଆଗେ ଅଛି ବସ୍ତୃତ ।
କର ତହିଁ ଭ୍ରମଣ   ଘଟାନ୍ତୁ ବା ମରଣ ।
ଏଣୁ ହେ ପ୍ରଭୁ ଧର   ରଖ ହସ୍ତ ତାଙ୍କର ।
ତବ ସ୍ୱର୍ଗୀୟ ଗୃହେ   ପ୍ରବେଶ ହେବା ଯାଏ ।
ପ୍ରେମ ବଚନେ ତାଙ୍କୁ ଆକର୍ଷ । ୪ ।
ଶିଶୁଙ୍କର ତ୍ରାଣକର୍ତ୍ତା ତୁମ୍ଭେ ବଖ୍ୟାତ ।
ତେଣୁ ହୁଏ ଭରସାରେ ଆନନ୍ଦ ଚିତ୍ତ ।
ଅଛୁଁ ବିଶ୍ୱାସେ ଜ୍ଞାତ   ତବ ସୁଅଭିମତ ।
ତୁମ୍ଭେ ପ୍ରାର୍ଥନା ତୁଚ୍ଛ   ନ କରିବ କଦାଚ ।
ଏଣୁ ତୁମ୍ଭର ଗୃହେ   ତାଙ୍କ ପ୍ରବେଶ ଯାଏ ।
ପ୍ରେମ ବଚନେ ତାଙ୍କୁ ଆକର୍ଷ । ୫ ।   [ କ୍ଷେମ ସାହୁ ]

---

୨ ।   ସ୍ୱର—କିପାଁ ମନରେ ଏତେ ଚିନ୍ତା ଭାବନା ।

ଅହା କି ସୁଖରେ ସାନ ପିଲାଗଣ ।
ସ୍ୱର୍ଗପୁରେ କରନ୍ତି କାଳକ୍ଷେପଣ । ଘୋଷା ।

ପ୍ରଭୁଙ୍କର ସିଂହାସନ ତୀର ପାଖରେ ।
ଠିଆ ହୋଇଛନ୍ତି ସେମାନେ କି ହୃଷ୍ଟରେ
ପାପ ଯେତେ ତାଙ୍କର   ସବୁ ହୋଇଛି ଦୂର ।
ଶୋକ ଦୁଃଖ କ୍ରନ୍ଦନ   ଆଉ ନ ଥାଏ ପୁଣ ।
ଏଣୁ ଆନନ୍ଦେ ପୂର୍ଣ୍ଣ   ହୋଇ କରନ୍ତି ଗାନ ।
ଜୟ ଜୟ ଜୟ ଅନୁକ୍ଷଣ । ୧ ।

ଥିଲେ ସେହିମାନେ ଥରେ ତୁମ୍ଭ ପରୁରେ ।
ସାନ ପିଲା ହୋଇ ଏ ଅନାଥ୍ୟ ସଂସାରେ ।
ଯେତେବେଳେ ସେମାନେ ଏମନ୍ତ ହୃଷ୍ଟମନେ ।
ଯୀଶୁ ପ୍ରଶଂସା ଗାନ ନ କରୁଲେ ପ୍ରମାଣ ।
ମାତ୍ର ଏବେ କେମନ୍ତ ଦେଖ ସୁନ୍ଦର ମତ ।
କରନ୍ତି ଜୟ ଜୟ ଗାୟନ । ୨ ।

କହ ଏହି ପିଲମାନେ କେଉଁ ପରୁରେ ।
ପ୍ରବେଶ ହୋଇଅଛନ୍ତି ସ୍ୱର୍ଗପୁରରେ ।
ଯହିଁ ନାହିଁ ବିଳାପ ନାହିଁ ମୃତ୍ୟୁ ସନ୍ତାପ
ନାହିଁ ଶୋକ କ୍ରନ୍ଦନ ପୂର୍ଣ୍ଣ ଆନନ୍ଦ ସ୍ଥାନ ।
ଜୟପରେ ସେମାନେ ଆସି ଏମନ୍ତ ସ୍ଥାନେ ।
କରନ୍ତି ଜୟ ଜୟ ଗାୟନ । ୩ ।

ଯେଣୁ ତ୍ରାଣକର୍ତ୍ତା ସେମାନଙ୍କ ହେତୁରେ ।
ନିଜ ରକ୍ତପାତ କଲେ କ୍ରୁଶ ଉପରେ ।
ସେ ରକ୍ତେ ହୋଇ ଧୌତ ହେବାରୁ ପରିଷ୍କୃତ ।
ଏବେ ସେ ପିଲାଗଣ ପିନ୍ଧି ଶୁକ୍ଳ ବସନ ।
ଗାଆନ୍ତି ସ୍ୱର୍ଗପୁରେ ଅତି ମଧୁର ସ୍ୱରେ ।
ଜୟ ଜୟ ଜୟ ଅନୁକ୍ଷଣ । ୪ ।

ଲୋଡ ଯୀଶୁଙ୍କ କରୁଣା ବାଲ୍ୟ କାଳରେ ।
କଲେ ତାଙ୍କୁ ପ୍ରେମ ଥାଇ ଏହି ସଂସାରେ ।
ଏଣୁ ଏବେ ସେମାନେ ସେ ଅମର ଭୁବନେ ।
ଯୁବାମେଷ ସମ୍ମୁରେ ଠିଆ ହୋଇ ହୃଷ୍ଟରେ ।
ଦେଖି ତାଙ୍କ ବଦନ ସୁଖେ କରନ୍ତି ଗାନ ।
ଜୟ ଜୟ ଜୟ ଅନୁକ୍ଷଣ । ୫ ।

ଶେଷ ସାଙ୍ଗ ।

୩ । TUNE—*Thank God for the Bible.*

ନ କରିବି କି ପ୍ରେମ ମୁଁ ତାହାଙ୍କୁ ।
    ଆସିଥିଲେ ଯେ ମହୀକୁ ।
ହେଲେ ଧନହୀନ    ସହିଲେ କଷଣ ।
    ଭୋଗିଲେ    କ୍ରୂଶରେ ମରଣ ?
ହଁ କରିବି ପ୍ରେମ    ଦେଇ ସବୁ ମନ ।
ଯେଣୁ ମୋ କାରଣ    ସହି ସେ କଷଣ ।
    ଭୋଗିଲେ    କ୍ରୂଶରେ ମରଣ । ୧ ।

ନ କରିବି କି ପ୍ରେମ ମୁଁ ତାହାଙ୍କୁ ।
    ଜୟ କଲେ ଯେ ମୃତ୍ୟୁକୁ ।
କଲେ ଆରୋହଣ    ସ୍ୱର୍ଗକୁ ସେ ପୁଣ ।
    କରିବାକୁ ସ୍ଥାନ ନିର୍ମାଣ ?
ହଁ କରିବି ପ୍ରେମ    ଦେଇ ସବୁ ସବୁ ମନ ।
ଯେଣୁ ମୋ କାରଣ    ସ୍ୱର୍ଗେ ବାସସ୍ଥାନ ।
    କରିଅଛନ୍ତି ସେ ନିର୍ମାଣ । ୨ ।

ନ କରିବି କି ପ୍ରେମ ମୁଁ ତାହାଙ୍କୁ ।
    ନିଜ ଲୋକ ଯେ ନେବାକୁ ।
ଆସିବେ ସଂସାରେ    ସେହି ଆଉ ଥରେ ।
    ନିଜ ସାଧୁଙ୍କ ସଙ୍ଗତରେ ?
ହଁ କରିବି ପ୍ରେମ    ଦେଇ ସବୁ ମନ ।
ଯେଣୁ ଆଉ ଥରେ    ଆସିବେ ସଂସାରେ ।
    ମୋତେ ନେବାକୁ ସ୍ୱର୍ଗପୁରେ । ୩ ।

ନ କରିବି କି ପ୍ରେମ ମୁଁ ତାହାଙ୍କୁ ।
    ପଥ ଯେ କଲେ ସ୍ୱର୍ଗକୁ ।

ଯେ ମହାନନ୍ଦରେ  ପାପିକ ସ୍ୱର୍ଗରେ ।
ରଖନ୍ତି ପ୍ରଭୁ ଶ୍ରୀ ଖ୍ରୀଷ୍ଟରେ ?
ହାଁ କରିବ ପ୍ରେମ  ଦେଇ ସବୁ ମନ ।
ଯେଣୁ ମୁଁ ସ୍ୱର୍ଗରେ  ତାହାଙ୍କ ହେତୁରେ ।
ରହିବ ପ୍ରଭୁ ଶ୍ରୀ ଖ୍ରୀଷ୍ଟରେ । ୪ ।

[ଶେମ ସାଙ୍କ ।

୪ । TUNE—*Thank God for the Bible.*

ଡାକୁଅଛନ୍ତି ଯୀଶୁ କ ମଧୁରେ ।
ସାନ ପିଲାଙ୍କୁ ଖ୍ରୀଷ୍ଟରେ ।
କରିବାକୁ ଦାନ  ପାପର ମୋଚନ ।
ଅବର ନବତନ ମନ ।
ନ ଯିବା କ ଯାଇ ?
ହାଁ ଚାଲ ହେ ଯାଇ ।
ଯେଣୁ ନୂଆ ମନ  ପାପର ମୋଚନ ।
ସବୁ ଦାନ ମଧ୍ୟେ ପ୍ରଧାନ । ୧ ।
ଡାକୁଅଛନ୍ତି ଯୀଶୁ କ ମଧୁରେ ।
ସାନ ପିଲାଙ୍କୁ ଖ୍ରୀଷ୍ଟରେ ।
ପାଳକ ପରିରେ  ବହି ସେ କୋଳରେ ।
ନେବାକୁ ଜୀବନ ପଥରେ ।
ନ ଯିବା କ ଯାଇ ?
ହାଁ ଚାଲ ହେ ଯାଇ ।
ଯେଣୁ ଯୀଶୁ କୋଳେ  ରହି ସବୁବେଳେ ।
କାଟିବା ଜୀବନ କୁଶଳେ । ୨ ।
ଡାକୁଅଛନ୍ତି ଯୀଶୁ କ ମଧୁରେ ।
ସାନ ପିଲାଙ୍କୁ ଖ୍ରୀଷ୍ଟରେ ।

ନେବାକୁ ସ୍ୱର୍ଗକୁ ନିଜ ଶ୍ରୀ ଖ୍ରୀଷ୍ଟଙ୍କୁ ।
ଅନନ୍ତ ଜୀବନ ଦେବାକୁ ।
ନ ଯିବା କି ଯାଇଁ ।
ହଁ। ଚାଲ ହେ ଯାଇଁ ।
ଯେଣୁ ସ୍ୱର୍ଗପୁରେ ଯୀଶୁ ଶ୍ରୀ ଖ୍ରୀଷ୍ଟରେ ।
ରହିବା ଅନନ୍ତ ସୁଖରେ । ୩ ।

[ କ୍ଷେମ ସାଧୁ ।

---

୫ ।

(ନୂତନ ବରଷ ।)

TUNE—*Missionary.*

ଅହଃ କି ଶୁଭ ଦିବସ ହୋଇଲା ପ୍ରବେଶ ।
ଦେଖିଣ ତା ନୟନ କି ହରଷ ମନ ।
ଆସ ସଙ୍ଗୀ ସମସ୍ତ ହୋଇବା ଏକତ୍ର ।
ଗାଇବା ଜୟ ଗୀତ ହୋଇ ଆନନ୍ଦିତ । ୧ ।
ଧନ୍ୟ ଦୟାସାଗର ଦୟାରେ ତାଙ୍କର ।
ବଞ୍ଚିଲୁ କୁଶଳରେ ଗତ ବରଷରେ ।
ଦେଖିଲୁଁ ନୂଆ ବର୍ଷ ତେଣୁ କେତେ ହର୍ଷ ।
ଆସ ଗାଇବା ଗୀତ ହୋଇ ଆନନ୍ଦିତ । ୨ ।
ଅଟୁଁ କି ଭାଗ୍ୟବାନ ଆମ୍ଭେ ପିଲାଗଣ ।
ଏ ଶାବତ ସ୍କୁଲରେ ବାଳକ କାଳରେ ।
କରୁଅଛୁଁ ଶ୍ରବଣ ତ୍ରାଣକର୍ତ୍ତା ପ୍ରେମ ।
ଯାର ମାହାତ୍ମ୍ୟ କେତେ କୃପା ଏହି ମତେ । ୩ ।
କର ପ୍ରଭୁ ଆଶିଷ ଯେପରି ଏ ବରଷ ।
କ୍ଷେପଣ କୁଶଳରେ ହେବ ଶ୍ରୀ କୃପାରେ ।
ପାଇବ ମନେ ସ୍ଥାନ ପ୍ରାପ୍ତ ଶିକ୍ଷାମାନ ।
ଚାଲିବୁ ଧର୍ମପଥେ ଜୀବନ ପ୍ରଭାତେ । ୪ ।

[ କ୍ଷେମ ସାଧୁ ।

୬ । ( ଯୁବାମାନଙ୍କର ମଙ୍ଗଳ ବର୍ଣ୍ଣ । )

ବର ପିଲାପିଲ୍ଲି ଧର୍ମ ସାଧନ ।

ଏ ଶୁଭ ନବ ଯୌବନେ କର ପ୍ରଭୁ ଭଜନ । ଘୋଷା ।

କର ତୁମ୍ଭ ଯୁବାକାଳେ ସୃଷ୍ଟିକର୍ତ୍ତାଙ୍କୁ ମନରେ ।
ନ ହୁଅ ବିସ୍ମରଣ ଧନେ ।
ହେବ କଲ୍ୟାଣ ଯାବଜ୍ଜୀବନ ।
ଯେତେଣେ ଗଲେ ତେଣେ ପଡ଼ିଥିବ କୃପା କିରଣ । ୧ ।

ଯୀଶୁ ତ୍ରାଣକର୍ତ୍ତା ପ୍ରତି ରଖ ପ୍ରେମ ଭକ୍ତି ନିତ ।
ସମର୍ପି ଦେହ ପ୍ରାଣ ମତି ।
ସେ ସର୍ବୋତ୍ତମ ଶୁଭ୍ର ବସନ ।
ଦେଣେ କି ମନୋରଞ୍ଜନ କଲେ ତା ପରିଧାନ । ୨ ।

ସ୍ୱର୍ଗୀୟ କପୋତ ପ୍ରତି କର ହେ ନିତ୍ୟ ବିନତି ।
କରୁନ୍ତୁ ମନେ ଅବସ୍ଥିତି ।
ହେବ ପ୍ରସନ୍ନ ଜ୍ଞାନ ଲୋଚନ ।
ମିଳିବ ଶାନ୍ତି ପ୍ରବୋଧ ମନ ହେବ ନୂତନ । ୩ ।

କର ବିଦ୍ୟା ଜ୍ଞାନ ଧନ ଯୌବନରେ ଆୟୋଜନ ।
ଜ୍ଞାନ କରେ ଉଚ୍ଚେ ଆହ୍ୱାନ ।
ବିଦ୍ୟା ରତନ କର ଯତନ ।
ହେଉ ତା ତୁମ୍ଭର ରମଣୀୟ ଶିରୋଭୂଷଣ । ୪ ।

ଯୌବନେ ସର୍ବ କୁପଥ ତ୍ୟାଗ କରି ହୁଅ ରତ ।
ଧର୍ମ ସେବାରେ ଅବିରତ ।
ହେବ ଦୀର୍ଘାୟୁ ମିଳିବ ଅଉ ।
ଇହଲୋକେ କୃପାଦାନ ପରଲୋକେ ଜୀବନ । ୫ ।

[ମୁକୁନ୍ଦ ଦାସ ।]

୭ । **Tune**—*Hoild the Fort.*

କେଡେ ସୁଖେ ମୁଁ ଦେଖିଲି ଏ ରବିବାର ।
ଅତି ପଥ ଆନନ୍ଦରେ   ମନ ମୋହର । ଘୋଷା ।

ଗତ ଛଅ ଦିନ ବିତି   ଗଲା କୁଶଳେ ।
ଉଠିଲି ଆଜି ପ୍ରଭାତେ   ମହା ମଙ୍ଗଳେ । ୧ ।

ସପ୍ତାହର ଅନ୍ୟ ଦିନୁ   ଏ ଦିନ ଭିନ୍ନ ।
ଆଜି ଅଟେ ସାଧୁଙ୍କର   ବିଶ୍ରାମ ଦିନ । ୨ ।

ମୃତ୍ୟୁ ଶତ୍ରୁର ନାହିଁତ   ଭଗ୍ନ କରଣ ।
ଆଜି ଉଠିଥିଲେ ତ୍ରାତା   ଯୀଶୁ ସଜ୍ଜନ । ୩ ।

ଚତୁର୍ଥାଜ୍ଞା ଆଜି ନୋହି   ମୁଁ ବିସ୍ମରଣ ।
ପବିତ୍ରରୂପେ କରିବି   ଏହା ପାଳନ । ୪ ।

ଆଜି ପ୍ରଭୁ ଗୃହେ ତାଙ୍କ   ସାଧୁ ସହିତ ।
ଗାଇବି ମୁଁ ଧନ୍ୟବାଦ   ପ୍ରଶଂସା ଗୀତ । ୫ ।

ଆଜି ଦିନ ନିତ୍ୟ ବିଶ୍ରାମର   ଦୃଷ୍ଟାନ୍ତ ।
ସେ ବିଶ୍ରାମ ଲାଗି ଏଠି   ହେବି ପ୍ରସ୍ତୁତ । ୬ ।

ପରମାର୍ଥ ବିଦ୍ୟାଳୟ   ଅଟେ ଏ ଦିନ ।
ଶିଖିବି ମୁଁ ଯତ୍ନେ ଖ୍ରୀଷ୍ଟ   ଉତ୍ତମ ଜ୍ଞାନ । ୭ ।

ଆହା କି ମନୋରଞ୍ଜନ   ସୁଖ ଦିବସ ।
ଆଜି ଦିନ ହେଉ ପ୍ରଭୁ   ସେବାରେ ଶେଷ । ୮ ।

ଆସ ସଙ୍ଗୀ ପିଲାଗଣ   କର ଗାୟନ ।
ହୋଶାନା ହୋଶାନା ଜୟ   ହୋଶାନା ଗାନ । ୯ ।

[ମୁକୁନ୍ଦ ଦାସ ।

---

୮ । (ଯିରୂଶାଲମ ପିଲାଙ୍କ ଜୟଗାନ ।)

**Tune**—*Tirerton, C. M.*

ଯିରୂଶାଲମ ନିବାସୀ   ପିଲାପିଲି ଦଳ ।
ଉଚ୍ଚସ୍ୱରେ ପକାଇଲେ   ଆନନ୍ଦ ଚହଳ । ୧ ।

ହୋଶାନା ହୋଶାନା ଯୀଶୁ   ଦାଉଦ ସନ୍ତାନ ।
ମନ୍ଦିରରେ ଉଚ୍ଚସ୍ୱରେ   କଲେ ଜୟଗାନ । ୨ ।
ହିଂସକ ଫାରୂଶୀ ଆଉ   ଅଧ୍ୟାପକଗଣ ।
ଏହା ଶୁଣି ହୋଇଥିଲେ   ବିରସ ବଦନ । ୩ ।
ବାଳକ ଓ ଦୁଗ୍ଧ ପୋଷ୍ୟ   ଶିଶୁଙ୍କର ଗୀତ ।
ପ୍ରଭୁ ଶୁଣି ହେଉଥାନ୍ତି   କେତେ ହୃଷ୍ଟଚିତ୍ତ । ୪ ।
ଏଣୁ ଆହେ ଏବକାଳ   ପିଲାପିଲାଗଣେ ।
ତୁମ୍ଭ କର୍ତ୍ତବ୍ୟ କର୍ମ କି   ନୁହେ ସେ ପ୍ରମାଣେ । ୫ ।
ଯିରୂଶାଲମ ଶିଶୁଙ୍କ   ପଶ୍ଚାଦ୍ଗାମୀ ହୋଇ ।
ହୋଶାନା ବୋଲି ପ୍ରଭୁଙ୍କ   ମନ୍ଦିରକୁ ଯାଇ । ୬ ।
ହୋଶାନା ହୋଶାନା ଯୀଶୁ   ଦାଉଦ ସନ୍ତାନ ।
ଏକ ସ୍ୱରେ ଗାଅ ଘେରି   କୃପା ସିଂହାସନ । ୭ ।
ହୋଶାନା ଶୁନାଦ ସ୍ୱର୍ଗ   ଦ୍ୱାର ଯାଏ୍ ଯାଉ ।
ପିଲାପିଲାଙ୍କ ଉପରେ   କଲ୍ୟାଣ ଓହ୍ଲାଉ । ୮ । [ମୁକୁନ୍ଦ ଦାସ ।

---

୫ ।   ( ଖ୍ରୀଷ୍ଟ ସାନ ପିଲାଙ୍କୁ କୋଳରେ ଧରି ଆଶୀର୍ବାଦ କରନ୍ତି । )

ସ୍ୱର—କର୍ପା ମନରେ ଏବେ ଚିନ୍ତା ସ୍ୱବଳା ।

ଯୀଶୁ ସର୍ବ ଶାନ୍ତି ମଙ୍ଗଳ ନିଧାନ ।
ଯେ ଆସେ ପାଏ ସେହି ତାଙ୍କ କଲ୍ୟାଣ । ଘୋଷା ।

ଲେଖିତ ଏରୂପ ସୁସମାଚାର ଗ୍ରନ୍ଥେ ।
ପ୍ରଭୁ ଯୀଶୁ ଥିଲେ ଯେଉଁ କାଳେ ଜଗତେ ।
କେତେ ଲୋକ ଶିଶୁଙ୍କୁ   ଘେନି ତାଙ୍କ ସମ୍ମୁଖକୁ ।
ଆଇଲେ ତାଙ୍କଠାରୁ   ଆଶୀର୍ବାଦ ନେବାକୁ ।
କରି ତାହା ଦର୍ଶନ   ତାଙ୍କର ଶିଷ୍ୟଗଣ ।
ଲୋକମାନଙ୍କୁ କଲେ ବାରଣ । ୧ ।

ତ୍ରାଣକର୍ତ୍ତା ଯୀଶୁ ଏହା କରି ଦର୍ଶନ ।
କହିଲେ ଆଶ୍ୱାସଦାୟୀ ମିଷ୍ଟ ବଚନ । ୧
ନ କର ଶିଷ୍ୟଗଣ ଶିଶୁଙ୍କୁ ନିବାରଣ ।
ଯେଣୁ ଯେତେ ଏପରି ସ୍ୱର୍ଗରାଜ୍ୟ ତାଙ୍କର ।
ଦିଅ ଆମ୍ଭ ପାଖକୁ ଶିଶୁଙ୍କୁ ଆସିବାକୁ ।
ନ କର ସେମାନଙ୍କୁ ବାରଣ । ୨ ।
ଯଦ୍ୟପି ସେ ଏବେ ନାହାନ୍ତି ମର୍ତ୍ତ୍ୟପୁରେ ।
ଉପବିଷ୍ଟ ପିତାଙ୍କ ଦକ୍ଷିଣ ପାର୍ଶ୍ୱରେ ।
ତଥାପି ଯେ ବାଳକ କୃପାସନର ପାଖ ।
ଲୋଡ଼ି ତାଙ୍କ କରୁଣା ଆସେ କରି ପ୍ରାର୍ଥନା ।
ଯୀଶୁ ତାହାର ପ୍ରତି ବୋଲିବେ ପୂର୍ବମତ ।
ନ କର ପିଲାଙ୍କୁ ନିବାରଣ । ୩ ।
ଏଣୁ ଆସ ପିଲାପିଲି ଯିବା ବହନ ।
ଯୀଶୁଙ୍କ କୃପା ସିଂହାସନ ସନ୍ନିଧାନ ।
କରିଣ ସେ ଶ୍ରବଣ ପିଲାଙ୍କ ନିବେଦନ ।
କରିବେ ଆଲିଙ୍ଗନ ଦେଇ କଲ୍ୟାଣ ଦାନ ।
ତାଙ୍କ ପ୍ରସନ୍ନ ମୁଖ ଉଦୟେ ଯିବ ଦୁଃଖ ।
ନ କରିବେ ପିଲାଙ୍କୁ ବାରଣ । ୪ । [ମୁକୁନ୍ଦ ଦାସ ।

---

୧୦ । ( ଦାନସ୍ୱେଲର ପ୍ରାର୍ଥନା । )

ସ୍ୱର—କେ ଦେବ ଦଣ୍ଡାଜ୍ଞା ପ୍ରଭୁ ମନୋନୀତ ଲୋକଙ୍କୁ ।

କର ଦୃଷ୍ଟି ଉବଷଂଭୂବନ୍ତା ଦାନସ୍ୱେଲଙ୍କୁ
କେଡେ ଉଦ୍ଯୋଗୀ ସେ ହେଲ ପ୍ରାର୍ଥନା କରିବାକୁ । ଘୋଷା ।

ଯିରୂଶାଲମ ପ୍ରତି ଅନାଇ ସ୍ଥିରମତି
କରୁଥାଏ ସେ ପ୍ରାର୍ଥନା ତିନଥର ଦିନକୁ । ୧ ।

ଯଦି ଉଗ୍ରାଗ୍ନିଗଣ ଜଳିଲେ ଅନୁକ୍ଷଣ ।
ତଥାପି ନୋହିଲ ଭୀତ ପ୍ରାର୍ଥନା କରିବାକୁ । ୨ ।
ଯଦି ସିଂହ ଗାତରେ ପକାଇଲେ ଛଳରେ ।
ତଥାପି ନୋହିଲ କ୍ଷାନ୍ତ ପ୍ରାର୍ଥନା କରିବାକୁ । ୩ ।
ସିଂହଗଣ ମେଳରେ ଶୋଇଲ କୁଶଳରେ ।
ହେଲ ତାଙ୍କ ମୁଖ ରୁଦ୍ଧ ଗ୍ରାସ ନ କଲେ ତାକୁ । ୪ ।
ସେ ସର୍ବଶକ୍ତିମାନ ପ୍ରକାଶି ପରାକ୍ରମ ।
ସିଂହମାନଙ୍କ ମୁଖରୁ ରକ୍ଷା କଲେ ଦାସକୁ । ୫ ।
ପିଲାପିଲି ସମସ୍ତ ସେ ଦାନିଏଲ ମତ ।
ପ୍ରାର୍ଥନା କର ସତତ ଚାହିଁ ଖ୍ରୀଷ୍ଟ ମୁଖକୁ । ୬ । [ମୁକୁନ୍ଦ ଦାସ ।

---

୧୧ । (ଶାମୁଏଲ ପ୍ରଭୁଙ୍କ ରବ ଶୁଣିବା ବିଷୟ ।)

ସ୍ୱର—କର ପିଲପିଲି ଧର୍ମ ସାଧନ ।

ଯୁବାକାଳେ ପ୍ରଭୁଙ୍କ ଡାକ ଶୁଣ ।

ଶତ୍ରୁ ଗମନେ ତାହା ମନେ ମନେ ହେ ଗୁଣ । ଘୋଷା ।

ସାନ ଶାମୁଏଲ ପ୍ରତି କର ପିଲାପିଲି ଦୃଷ୍ଟି ।
ସେ ପିଲାଙ୍କ ଉଦାହରଣ ।
ପ୍ରଭୁଙ୍କ ବାଣୀ ବୋଲେ ସେ ଶୁଣି ।
ବୋଲ ପ୍ରଭୁ ତବ ଦାସ କରୁଅଛି ଶ୍ରବଣ । ୧ ।
ଧର୍ମଗ୍ରନ୍ଥେ ତେସନ ପ୍ରଭୁ କରନ୍ତି ଆହ୍ୱାନ ।
କର ଶ୍ରବଣ ପିଲାଗଣ ।
ତାଙ୍କ ବଚନ ମନୋରଞ୍ଜନ ।
ଦିଅ ପିଲାଗଣ ଆମ୍ଭକୁ ତବାନ୍ତଃକରଣ । ୨ ।
ଧର୍ମଗ୍ରନ୍ଥ ପାଠ କାଳେ ପ୍ରଭୁଙ୍କ ଡାକ କର୍ଣ୍ଣରେ ।
ଶୁଭଇ କି ମନୋରଞ୍ଜନ ।

ସେ ଡାକ ଶୁଣ ନ ବୁଝ କାନ ।
ବୋଲ ପ୍ରଭୁ ତବ ଦାସ କରୁଅଛି ଶ୍ରବଣ । ୩ ।
ଗଲବେଳେ ପ୍ରଭୁ ଘରେ ଯାଅ ଅତି ଧୀରେ ଧୀରେ ।
ପ୍ରଭୁ ସେଠାରେ ବିଦ୍ୟମାନ ।
ବୋଲ ପ୍ରଭୁଙ୍କୁ ତବ ସମ୍ମୁଖୁ ।
ଆସିଅଛୁଁ ତବ ଡାକ ଶୁଣିବାର କାରଣ । ୪ । [ମୁକୁନ୍ଦ ଦାସ ।

---

୧୨ । (ଧର୍ମପୁସ୍ତକ ।)

ସ୍ୱର—ଧନ ମୋ ସଫଳ ହେଲା ।

ଧର୍ମଗ୍ରନ୍ଥ ମନୋହର ଅଟଇ ଶିକ୍ଷା ଭଣ୍ଡାର ।
ଈଶ୍ୱରବେଶେ ରଚିତ ଘୁଞ୍ଚାଏ ମନ ଅନ୍ଧାର । ଘୋଷା ।

ଏ ଶାସ୍ତ୍ର ପ୍ରଭୁ କୃପାରେ ପ୍ରକାଶିତ ଜଗତରେ ।
କହାଏ ତ୍ରାଣ ପଥରେ ମନ ଭ୍ରମ କରେ ଦୂର । ୧ ।

ପୃଥିବୀ ଆଉ ଗଗଣ କିରୂପେ ହେଲା ସୃଜନ ।
ନର ଦାନ ଏହି ଜ୍ଞାନ ଆଉ ସୃଷ୍ଟି ଆଦମର ।

ଯେଉଁରୂପେ ପାପ କ୍ଲେଶ ଜଗତେ ହେଲା ପ୍ରବେଶ ।
ଏ ସବୁ ତହିଁ ପ୍ରକାଶ ଅଟଇ କେଡେ ମନୋହର । ୩ ।

ପାପୁଁ ପଳାଇବା ପାଇଁ ଶିକ୍ଷା ଦାନ କରେ ସେହି ।
ଅନୁଭବ ଦଏ ଜଣାଇ କର୍ତ୍ତବ୍ୟ କର୍ମ ମୋହର । ୪ ।

ଏହି ସର୍ବୋତ୍ତମ ଜ୍ଞାନ କରଇ ସେହି ପ୍ରଦାନ ।
ଭୋଗିଲେ ଯୀଶୁ ମରଣ ସହି ପାପି ପାପ ଭାର । ୫ ।

ଯେ ପଢେ ସେ ଜାଣେ ତାର ବଚନ କେଡେ ମଧୁର ।
ସକଳ ପ୍ରତିଜ୍ଞା ତାର ଧ୍ୟାନ କଲେ ଦୁଃଖ ଦୂର । ୬ ।

ଯେତେକ ବାଳକଗଣ କରନ୍ତୁ ତାହା ପଠନ ।
ଧନ୍ୟ ତାଙ୍କର ଜୀବନ ଭୋଗିବେ ସ୍ୱର୍ଗାଧିକାର । ୭ ।

[ମୁକୁନ୍ଦ ଦାସ ।

(ଈଶ୍ୱରଙ୍କ ଭୟ ।)

୯ । ସ୍ୱର—ଚୌଦାକ୍ଷର ।

ଅହେ ପିଲାପିଲି ଈଶ୍ୱରଙ୍କୁ ଭୟ କର ।
ଯେଣୁ ଈଶ୍ୱରଙ୍କ ଭୟ ଅଟେ ଜ୍ଞାନ ମୂଳ । ୧ ।
ରୂପାର ଆକର ଅଟେ ଅଛୁ ସୁନା ସ୍ଥାନ ।
ମାତ୍ର ଜ୍ଞାନ କେଉଁଠାରୁ ହୁଅଇ ପ୍ରାପଣ । ୨ ।
କୌଣସି ମନୁଷ୍ୟ ତାହା ମୂଲ୍ୟ ନ ଜାଣଇ ।
ପୁଣି ମର୍ତ୍ତ୍ୟ ଭୁବନରେ ତାହା ନ ମିଳଇ । ୩ ।
ଗଭୀର ସ୍ଥାନ ବୋଲେ ତା ନାହିଁ ମୋହୋଠାରେ ।
ସମୁଦ୍ର ବୋଲଇ ତାହା ନାହିଁ ମୋ ମଧ୍ୟରେ । ୪ ।
ନିର୍ମଳ ସୁବର୍ଣ୍ଣ ଦ୍ୱାରା ତାହା ନ ମିଳଇ ।
ଅବର ରୂପାରେ ତାହା କଣା ନ ହୁଅଇ । ୫ ।
ଏଣୁ ଈଶ୍ୱରଙ୍କ ଭୟ ଅଟେ ସତ୍ୟ ଜ୍ଞାନ ।
କୁକ୍ରିୟାକୁ ପରତ୍ୟାଗ କଲେ ବୁଦ୍ଧି ଜାଣ । ୬ ।
ଈଶ୍ୱରଙ୍କ ଭୟ ପାପକୁ ଘୃଣା କରଇ ।
ପୁଣି ଈଶ୍ୱରଙ୍କ ଭୟ ଦୀର୍ଘାୟୁ ଦଅଇ । ୭ ।
ପ୍ରଭୁଙ୍କୁ ଯେ ଭୟ କର ତାଙ୍କ ବାଟେ ଚଳେ ।
ଧନ୍ୟ ଅଟେ ସେହି ଜନ ଇହ ପରକାଳେ । ୮ ।
ଆଉ ଈଶ୍ୱରଙ୍କୁ ଭୟ କରେ ଯେଉଁ ଜନ ।
କୌଣସି ଅଭାବ ନ ହୋଇବ କଦାଚନ । ୯ ।
ଯୁବାସିଂହ ଖାଦ୍ୟ ବିନା ଯଦ୍ୟ କ୍ଲେଶେ ରହେ ।
ଈଶ୍ୱର ଭୟକାରୀର ଅଭାବ ନ ଥାଏ । ୧୦ ।
ଏଣୁ ବାଲ୍ୟକାଳୁଂ କର ଈଶ୍ୱରଙ୍କୁ ଭୟ ।
ତେଣୁ ଘଟିବ ତୁମ୍ଭର ମଙ୍ଗଳ ନିଶ୍ଚୟ । ୧୧ ।

[ମୁକୁନ୍ଦ ଦାସ ।

(ସତ୍ୟ ଜ୍ଞାନ ।)

୧୪ । ସ୍ୱର—ଯୁବାକାଳେ ପ୍ରଭୁଙ୍କ ଡାକ ଶୁଣ ।

କର ପିଲାଏ ଜ୍ଞାନାୟୋଜନ ।
ଯେଉଁ ହେତୁ ଜ୍ଞାନ ଅଟେ ସବୁଠାରୁ ପ୍ରଧାନ । ଘୋଷା ।

ଜ୍ଞାନ ଡାକେ ଉଚ୍ଚସ୍ୱରେ ଶୁଣ ତା ରବ ଶୀଘ୍ରରେ ଶୁଣି ତାକ ନବୁଝ ଭାନ
ଯତ୍ନ କରଣ କର ଅର୍ଜନ ।
ଧନ ଥାଉଁ ୨ ଜ୍ଞାନ କର ହେ ଉପାର୍ଜନ । ୧ ।

ଖୋଜ ରୂପାର ସମାନ ଲୋଡ ଯୋତାଧନ ସମ ମିଳିବ ତା ଅନୁସନ୍ଧାନ ।
ସେ ବହୁମୂଲ୍ୟ ନାହିଁ ତା ତୁଲ୍ୟ ।
ମୁକ୍ତାଦି ଇଷ୍ଟ ପଦାର୍ଥ ନୁହନ୍ତି ତା ସମାନ । ୨ ।

ତାହାର ଦକ୍ଷିଣ କରେ ଦୀର୍ଘାୟୁ ଥାଏ ଯତ୍ନରେ ବାମ ହସ୍ତେ ଧନ ସମ୍ଭ୍ରମ
ତାହାର ପଥ ସୁଖଦାୟକ ।
ତାହାର ବାଟ ସମସ୍ତ ଶାନ୍ତିଦାୟକ ଜାଣ । ୩ ।

ଧଲେ ତାକୁ ଆଲିଙ୍ଗନ ଦେବ ତୁମ୍ଭକୁ ସମ୍ଭ୍ରମ ଦେବ ବହୁମୂଲ୍ୟ ମୁକୁଟ
ତାକୁ ନ ଛାଡ ହେଳା ନ କର ।
ସ୍ୱର୍ଣ୍ଣ ଭୂଷଣ ସମାନ କର ତା ପରିଧାନ । ୪ ।

[ମୁକୁନ୍ଦ ଦାସ ।

---

(ଖ୍ରୀଷ୍ଟ ନିକଟକୁ ପିଲାଙ୍କୁ ନିମନ୍ତ୍ରଣ)

୧୫ ।

ଆସ ଆସ ହେ ସକଳ ପିଲାପିଲି ।
ଆସ ଆସ ହୋଇ ଏକ ମେଳି । ଘୋଷା ।

ଡାକୁଛନ୍ତି ଯୀଶୁ ସ୍ନେହ କରି ।
ନ କରିବେ ତୁଚ୍ଛ ପିଲା ବୋଲି । ୧ ।

ତାଙ୍କ କୋଳେ ବସ ସ୍ଥାନ ମାଡି ।
ଦେବେ ସେହି ଆଶୀର୍ବାଦ ଢାଳି । ୨

ଧାର୍ମିକ ହୁଅ ହେ ତାଙ୍କପରି ।
ଛାଡ ମିଥ୍ୟା ହିଂସା କ୍ରୋଧ ଆଦି । ୩

ପିଲାକାଳୁଁ ଶାମୁଏଲ ପରି ।
ତାଙ୍କ ଡାକ ଶୁଣ ଯତ୍ନ କରି । ୪ ।

ପ୍ରଭୁଙ୍କୁ ସର୍ବଦା ଭକ୍ତି କରି ।
ସେବା କର ଓବଦୀୟ ପରି । ୫ ।

ତେଣୁ ପ୍ରଭୁଙ୍କର କୃପା ବାରି ।
ତୋହ ମଧେ ଯିବ ପଶେଇ ଭରି । ୬ ।

[ମୁକୁନ୍ଦ ଦାସ ।

---

(ସ୍ୱର୍ଗ ବିଷୟ ।)

୧୬ । ସ୍ୱର—ମନ ମାନୁ ନାହିଁ କପାଇଁ ।

ସ୍ୱର୍ଗ କେଡେ ସୁଖ ଭୁବନ ।
ସକଳ ଧାର୍ମିକ ପିଲାପିଲି ଯାକ ସେ ପୁରେରେ ସର୍ବଦା ପାଆନ୍ତି ସ୍ଥାନ । ଘୋଷା ।

ଏ ଜଗତେ ଘଟେ ବିଷାଦ ପୁଣି ଘଟୁଥାଏ ବିଚ୍ଛେଦ ।
ସେ ପୁରେ ବିଭିନ୍ନ ନାହିଁ କଦାଚନ
କୁହେ ଦୁଃଖ ଶୋକ କେବେ ଦର୍ଶନ । ୧ ।

ଏ ଜଗତେ ଯେତେକ ଜନ କରିଥାନ୍ତି ପ୍ରଭୁଙ୍କୁ ପ୍ରେମ ।
ଘଟିଲେ ମରଣ ଯିବେ ସେ ଭୁବନ
କରିବେ ସାଧୁଙ୍କ ସହିତ ଗାନ । ୨ ।

ଯେତେ ଶିଶୁଗଣ ଯୀଶୁଙ୍କୁ ପ୍ରେମ କଲେ ଯିବେ ସେଠାକୁ ।
ଗାଇବେ ଅନନ୍ତ ଦିନ ଯୀଶୁ ନାମ
ସାଧୁଙ୍କ ସହିତ ହୋଇ ମିଳନ । ୩ ।

ଟିକେତେ ଆନନ୍ଦିତ ହୋଇବୁଁ ଯୀଶୁଙ୍କର ମୁଖ ଦେଖିବୁଁ ।
ସର୍ବ ଦୁଃଖ ଶୋକ ସନ୍ତାପ ଲୋତକ ।
ସବୁ କରିବେ ଦୂରେ ପଳାୟନ । ୪ ।

[ମୁକୁନ୍ଦ ଦାସ ।

୧୭ । (ରବିବାର)

ସ୍ୱର—ବିଭୁ ପ୍ରଭୁ ଧର୍ମ ସ୍ତମ୍ଭ ।

ଅହା ଆଜ କି ଆନନ୍ଦଜନକ ଦିନ
କର ଦର୍ଶନ ।
ଆମ୍ଭେ ମିଳିମିଶି କରୁଛୁଁ ଜୟଗାନ । ଘୋଷା ।

ଆଜ ପ୍ରଭୁଙ୍କର ଦିନ   କହୁଛନ୍ତି ନିରୂପଣ ।
ଅନ୍ୟାନ୍ୟ ଦିନରୁ ଆଜ   ଦିନ ବିଭିନ୍ନ । ୧ ।
ଆଜ ତ୍ରାତା ଯୀଶୁ ଖ୍ରୀଷ୍ଟ   ମୃତ୍ୟୁରୁ ହୋଇ ଉତ୍ଥିତ ।
ମୃତ୍ୟୁର ନାହୁତ କରି   ଥିଲେ ଭଞ୍ଜନ । ୨ ।
ଅଟେ ଏ ବିଶ୍ରାମ ଦିନ   ତ୍ୟାଗ କରି ନାନା ଶ୍ରମ ।
ସ୍ୱର୍ଗୀୟ ବିଶ୍ରାମର ଏହି   ନିଦର୍ଶନ । ୩ ।
ଆଜ ପ୍ରଭୁଙ୍କର ଦିନ   କରିବା ଧର୍ମ ପାଳନ ।
ପ୍ରଭୁଙ୍କ ସେବାରେ କରିବା   ସୁକ୍ଷେପଣ । ୪ ।
କଲେ ରକ୍ଷା ଛଅ ଦିବସ   ନାଶିଲେ ସଙ୍କଟ କ୍ଳେଶ ।
କୁଶଳେ କଲୁଁ ଦର୍ଶନ   ଏ ଶୁଭ ଦିନ । ୫ ।
ଯେ ପ୍ରଭୁ କରି ରକ୍ଷଣ   ଦେଖାଇଲେ ଏହି ଦିନ ।
କରି ତାଙ୍କୁ ଧନ୍ୟବାଦ   ପ୍ରଶଂସା ଗାନ । ୬ ।

[ମୁକୁନ୍ଦ ଦାସ ।

---

(ଖ୍ରୀଷ୍ଟ ପ୍ରତି କୃତଜ୍ଞତା ସ୍ୱୀକାର ।)

୧୮ । ସ୍ୱର—ମୁଁ କି କରି ।

ମୁଁ କି ଦେବି ।
ଯୀଶୁ ପାଦେ ଥୋଇବି ।
କି ଦେଇ ତାଙ୍କ ପ୍ରେମ ମୁଁ ଶୁଝିବି । ଘୋଷା ।

କି ଅଛି ମୋହର କି ଘେନି ଯିବି ।
ତାଙ୍କ ପ୍ରେମ ତୁଲ୍ୟ କି ଦ୍ରବ୍ୟ ଦେବି । ୧ ।
ମୁଁ ଦରିଦ୍ର କାହୁଁ ଧନ ପାଇବି ।
କି ଧନ ଦେଇ ବା ତାଙ୍କୁ ତୋଷିବି । ୨ ।

ସବୁତ ତାଙ୍କର ତାଙ୍କୁ କି ଦେବ ।
ତବ ଯୋଗ୍ୟ ପଦାର୍ଥ କାହୁଁ ଆଣିବ । ୩ ।

ଯଦ ମୋର ଦେହ ପ୍ରାଣ ଅର୍ପିବ ।
ତେବେ ମୁଁ ଧାରୁଅ ହୋଇ ରହିବ । ୪ ।

ଯାବଜ୍ଜୀବନ ମୁଁ କୃତଜ୍ଞ ହେବ ।
ନମ୍ର ହୋଇ ତାଙ୍କ ପାଦେ ପଡ଼ିବ । ୫ ।

ତାଙ୍କ ପ୍ରଶଂସାରେ କାଳ କାଟିବି ।
ଦେହ ପ୍ରାଣ ସବୁ ମୁଁ ଉତ୍ସର୍ଗିବି । ୬ ।

[ମୁକୁନ୍ଦ ଦାସ ।

---

୧୯ । (ଯୀଶୁଙ୍କ ଦ୍ୱାଦଶ ବର୍ଷର ବିବରଣ ।)

ସ୍ୱର—ବନ୍ଧୁ ପ୍ରଭୁ ଧର୍ମ ରାଜ୍ୟ ।

ପ୍ରଭୁ ଯୀଶୁଙ୍କର ପିଲାକାଳ ବୃତ୍ତାନ୍ତ
ଶୁଣ ବିସ୍ତୃତ
ହେଉ ତା ପିଲାପିଲାଙ୍କ ମନେ ଅଙ୍କିତ । ଘୋଷା ।

ବାର ବର୍ଷ ବେଲରେଇ ମନ୍ଦିରକୁ ଯାଇ ସେହି ।
ଉପଦେଶ ଶୁଣି ହେଲେ କି ହୃଷ୍ଟଚିତ୍ତ । ୧ ।

ପିଲାଙ୍କର ତାଙ୍କ ମତ ନୁହେଁ କି ଏହା ବିହିତ ।
ପ୍ରଭୁଙ୍କ ଘରକୁ ଯିବା ପାଇଁ ସତତ । ୨ ।

ଯିରୁଶାଲମରୁ ସେହି ନାଜରିତ ଗ୍ରାମେ ଯାଇ ।
ରହିଲେ ପିତା ମାତାଙ୍କ ହୋଇ ଅଧୃତ । ୩ ।

ପିଲାଙ୍କର ଏହି ମତ ଅଟଇ ଦେଖ ଉଚିତ ।
ହୋଇବାକୁ ପିତା ମାତାଙ୍କ ବଶୀଭୂତ । ୪ ।

ବଢ଼ିଲେ ସେ ପ୍ରତିଦିନ ଜ୍ଞାନରେ ଶରୀରେ ଜାଣ ।
କାହିଁ ଦେଖା ଅଛି ପିଲା ତାହାଙ୍କ ମତ । ୫ ।

ପିଲାଙ୍କର ଏହି ମତ ଅଟଇ ଦେଖ ବିହିତ ।
ବଢ଼ିବାକୁ ବୁଦ୍ଧି ଜ୍ଞାନରେ ଅବିରତ । ୬ ।

[ମୁକୁନ୍ଦ ଦାସ

୨୦ । (ଖ୍ରୀଷ୍ଟ ପିଲାମାନଙ୍କ ଦୃଷ୍ଟାନ୍ତ ।)

ସ୍ୱର—ବନ୍ଦୁ ପ୍ରଭୁ ଧର୍ମ ରାଜ୍ୟ ।

ମୋର ପ୍ରାଣବର୍ଦ୍ଧ ପ୍ରଭୁ ଯୀଶୁ ସଜନ
ଯୀଶୁ ସଜନ
ହୋଇଥିଲେ ସାନ ଶିଶୁ ମୋହୋ ସମାନ । ଘୋଷା ।

ଅତି ପବିତ୍ର ବାଳକ  ପୁଣି ସେହି ଅହିଂସକ ।
ତାଙ୍କପରି ପିଲାଦିନୁ  ଧରିବି ମନ । ୧ ।
ଥିଲେ ଅତି ନମ୍ରଶୀଳ  ସବୁ ଦୁଃଖେ ଧୈର୍ଯ୍ୟଶୀଳ ।
ତାଙ୍କପରି ସ୍ୱଭାବ  କରିବି ଧାରଣ । ୨ ।
ପର ଦୁଃଖେ ହେଲେ ଦୁଃଖୀ  ଦୟା କଲେ ରୋଗୀ ଦେଖି ।
ତାଙ୍କଠାରୁ ଶିଖିବି ମୁଁ  ଏସନ ଗୁଣ । ୩ ।
ଧର୍ମ କର୍ମେ ଯତ୍ନବାନ  ଥିଲେ ସେହି ପ୍ରତିଦିନ ।
ତାଙ୍କଠାରୁ ମୁଁ ଶିଖିବି  ଧର୍ମାଚରଣ । ୪ ।
ସେହି ସାନ ଶିଶୁ ହୋଇ  ଗଲେ ଯେଉଁ ବାଟ ଦେଇ ।
ତାଙ୍କ ପଛେ ପଛେ କରିବି  ମୁଁ ଗମନ । ୫ ।
ପ୍ରଭୁ ସାନ ପିଲା ମୁହିଁ  ମୋତେ ବଳ ଜ୍ଞାନ ଦେଇ ।
ତୁମ୍ଭପରି ସ୍ୱଭାବ  କରାଅ ଧାରଣ । ୬ ।

[ମୁକୁନ୍ଦ ଦାସ ।

---

୨୧ । (ଖ୍ରୀଷ୍ଟଙ୍କ ପ୍ରେମ ।)

ସ୍ୱର—କେ ଦେବ ଦଣ୍ଡାଜ୍ଞା ପ୍ରଭୁ ମନୋନୀତ ଲୋକଙ୍କୁ ।

ମୋର ପାଇଁ ପ୍ରଭୁ ଯୀଶୁ ତେଜି ସ୍ୱର୍ଗ ଭୁବନ ।
ହୋଇଥିଲେ ଦୀନହୀନ ମୋ ଉଦ୍ଧାର କାରଣ । ଘୋଷା ।

ତାଙ୍କ ଜନ୍ମ କାଳରେ ତାଙ୍କୁ ସ୍ଥାନ ନ ମିଳେ ।
ଉତ୍ତମ ଗୃହରେ ହୁଏ ମୋ ନିବାସ ଶୟନ । ୧ ।
ମୋତେ ସ୍ୱର୍ଗେ ନେବାକୁ ଆଇଲେ ଏ ପୃଥ୍ୱୀକୁ ।
ଦାସାକାର ବେଶେ ସେହି କଲେ ଦିନ କ୍ଷେପଣ । ୨ ।

ମୋତେ ଦେବାକୁ ଶାନ୍ତି କେତେ ଭୋଗିଲେ ଶାସ୍ତି ।
ହୋଇ ନ ପାରେ ବର୍ଣ୍ଣିବା ତାଙ୍କ ଦୁଃଖ କଷଣ । ୩ ।
ମୋର ମସ୍ତକେ ଦେହ ମୁକୁଟ ଦେବା ପାଇଁ ।
କଣ୍ଟାର ମୁକୁଟ ଆପେ କରଲେ ପରଧାନ । ୪ ।
କରବାକୁ ପବିତ୍ର ଢାଳିଲେ ନିଜ ରକ୍ତ ।
ମୁହିଁ ପାପି ଅପବିତ୍ର ତାଙ୍କ ରକ୍ତେ ତାରଣ । ୫ ।
ଦେବା ପାଇଁ ଜୀବନ ଭୋଗିଲେ ସେ ମରଣ ।
ଅସ ସବୁ ପିଲାଗଣ ନିଅ ତାଙ୍କ ଶରଣ । ୬ ।

[ମୁକୁନ୍ଦ ଦାସ ।

---

୨୧ । TUNE—*O! that will be Joyful!*

ହା ତହିଁର ସୁଖ, ସୁଖ, ସୁଖ, ସୁଖ ।
ହାଁ ତହିଁର ସୁଖ ସ୍ୱର୍ଗେ ସଦା ଭେଟ ଯେ । ଘୋଷା ।

ଏଠି ଘଟେ ବିଶାଦ ଏଠି ଘଟେ ବିଚ୍ଛେଦ ।
ସ୍ୱର୍ଗେ ନାହିଁ ଭେଦ । ୧ ।
ପ୍ରଭୁଙ୍କ ପ୍ରେମକାନ୍ତି ମଳେ ଯିବେ ସେ ପୁଣ୍ୟ ।
ହେବେ ଦୂତ ପର । ୨ ।
ଯେତେକ ପିଲାଗଣ ନେଲେ ଯୀଶୁ ଶରଣ ।
ସେ ପୁରେ ଦର୍ଶନ । ୩ ।
ଶିକ୍ଷକ ଆଉ ଛାତ୍ର ପଲ ପାଳକ ମିତ୍ର ।
ସମସ୍ତେ ଏକତ୍ର । ୪ ।
ଗୌରବ ସିଂହାସନେ ଯାହାଙ୍କୁ ସେ ଭୁବନେ ।
ଦେଖି ହୃଷ୍ଟ ମନେ । ୫ ।
ସେଠି ପଦ୍ମେ ସମସ୍ତ ଖ୍ରୀଷ୍ଟ ପ୍ରଶଂସା ଗୀତ ।
ଗାଇବା ସତତ । ୬ ।

---

[ମୁକୁନ୍ଦ ଦାସ ।

TUNE—*Hold the Fort.*

୨୨ । (ସ୍ୱର୍ଗୀୟ ଯିରୂଶାଲମ ।)

ଅହେ ଯିରୂଶାଲମ ହେ ଯିରୂଶାଲମ ।
କି ମନୋରମ ଏ ନାମ କି ସୁଖଧାମ । ଘୋଷା ।

କେବେ ହେବ ଶେଷ ମୋର ଏ ପରିଶ୍ରମ ।
ତବ ସୌନ୍ଦର୍ଯ୍ୟ କରିବ କେବେ ଦର୍ଶନ । ୧ ।

ମୁକ୍ତାରେ ନିର୍ମିତ ତବ ଦ୍ୱାର ଶୋଭନ ।
ସର୍ବ ଜଗତ ସୌନ୍ଦର୍ଯ୍ୟ ନୋହେ ତା ସମ । ୨ ।

ଅମୃତ ପ୍ରବାହ ତହିଁ କରେ ଗମନ ।
ମରଣ ଭୟ ନ ହୁଏ କେବେ ଶ୍ରବଣ । ୩ ।

ପାପ ସନ୍ତାପ ଦୁର୍ଗତି ଶୋକ କ୍ରନ୍ଦନ ।
ସେଠାରେ ନ କରନ୍ତି ଆଉ କର୍ଣ୍ଣାର୍ପଣ । ୪ ।

ଭବିଷ୍ୟଦ୍ବକ୍ତା ସର୍ବ ପ୍ରେରିତଗଣ ।
ସବୁ ଧାର୍ମିକ ଲୋକେ ହୁଅନ୍ତି ଦର୍ଶନ । ୫ ।

ଏମାନେ ଏକତ୍ର ମିଳି କରନ୍ତି ଗାନ ।
ଜୟ ଯୁବାମେଷ ପ୍ରଶଂସାକୁ ଭାଜନ । ୬ ।

ହେ ଯିରୂଶାଲମ ମୋର ସୁଖର ଧାମ ।
ମୋ ମନ ତବ ଦର୍ଶନ ଲାଗି ଉଚ୍ଛନ୍ନ । ୭ ।

ତବ ସୁଖ ଶାନ୍ତି କେବେ କଲେ ଦର୍ଶନ ।
ଦୂର ହେବ ମୋର ଶୋକ ସନ୍ତାପ ଶ୍ରମ । ୮ ।

[ମୁକୁନ୍ଦ ଦାସ ।

---

୨୩ । (ସ୍ୱର୍ଗ ବିଷୟ ।)

TUNE.—*Come to the Saviour.*

ଅଛି ସୁନ୍ଦର ଏକ ଦେଶ ।
ତହିଁ ସୁଖ ଶାନ୍ତି ଅଶେଷ ।
ସେଠାରେ ନାହିଁ ପାପ ଲେଶ ।
ନାହିଁ ଶୋକ କ୍ଲେଶ ।

*Chorus* ଆହା, ସେ କି ରମ୍ୟ ଭୁବନ ।
ସେଁ ସୁଖ କି ମନୋରଞ୍ଜନ ।
କରେ ତା ଭୋଗ ଯେଉଁ ଜନ ।
ଧନ୍ୟ ତା ଜୀବନ । ୧ ।
ଆସ ଆସ ଯିବା ବହନ ।
ଅଛିତ୍ରୁ ସେଠୁଁ ନିମନ୍ତ୍ରଣ ।
କ୍ଷପାଁ ଧର ସନ୍ଦେହ ମନ ।
ଦୂର ନାହିଁ ଜାଣ ।
*Chorus*—ଆହା, ସେ କି ରମ୍ୟ ଭୁବନ । ଇତ୍ୟାଦି । ୨ ।
ସେଠାକୁ କେତେ ପିଲ୍ଲଗଣ ।
ଅଗରୁ କରୁଣ ଗମନ ।
ସୁଖେ କାଟୁଅଛନ୍ତି ଦିନ ।
ହୋଇ ତେଜବାନ ।
*Chorus*—ଆହା, ସେ କି ରମ୍ୟ ଭୁବନ । ଇତ୍ୟାଦି । ୩ ।
ଆସ ସକଳ ପିଲ୍ଲପିଲ୍ଲି ।
ସେଠାକୁ ଆସ ଯିବା ଚାଲି ।
ଗାଇବା ସାଧୁଙ୍କ ସହିତ ।
ଜୟକାର ଗୀତ ।
*Chorus*—ଆହା, ସେ କି ରମ୍ୟ ଭୁବନ । ଇତ୍ୟାଦି । ୪ ।

[ମୁକୁନ୍ଦ ଦାସ ।

---

୨୪ । ( ସଂସାର ବିଦେଶ ।)

ସ୍ୱର—କି ମନୋହର ପ୍ରଭୁ ଯୀଶୁଙ୍କ ପଟାନ୍ତର ।
ମୁହିଁ ବିଦେଶୀ
ସଂସାରେ ଅଟଇ ପ୍ରବାସୀ । ଘୋଷା ।
ମୋର ଉତ୍ତମ ଘର ଅଟଇ ସ୍ୱର୍ଗପୁର ।
ପାପ ଯେଠାରେ କେବେ ନ ପାରଇ ପ୍ରବେଶି । ୧ ।

ସେ ମୋର ପିତା ଘର ମହା ମଙ୍ଗଳପୁର ।
ଦେଖା ନୋହିବ ସେଠି ପାପୀ କି ମିଥ୍ୟାଭାଷୀ । ୨ ।
ଯେବେ ଏହି ସଂସାର ଦର୍ଶନେ ମନୋହର ।
ଏଠାରେ ଘେରେ ନିତ୍ୟ ପାପ ସନ୍ତାପ ଆସି । ୩ ।
ଏଠାରେ ମୃତ୍ୟୁ ଭୟ ପ୍ରତିଦିନ ଉଦୟ ।
ଚିରକାଳ ଜୀବିତ ସେ ସ୍ୱର୍ଗପୁର ବାସୀ । ୪ ।
କେତେକ ପିଲାପିଲି ଏଠାରୁ ଯାଇ ଚାଲି ।
ଗାଆନ୍ତି ଜୟ ଗୀତ ସାଧୁଙ୍କ ସଙ୍ଗେ ମିଶି । ୫ ।
ଏଣୁ ମୁ ସ୍ୱର୍ଗ ପଥେ ଚାଲିବି ହୃଷ୍ଟଚିତ୍ତେ ।
ସ୍ୱର୍ଗ ମୋ ନିତ୍ୟ ଘର ମୁ ଏଠାରେ ବିଦେଶୀ । ୬ ।

[ମୁକୁନ୍ଦ ଦାସ ।

---

୨୫ । ( ପିଲାମାନେ ! ତୁମ୍ଭେମାନେ କି ଯୀଶୁଙ୍କୁ ପ୍ରେମ କର ? )

ସ୍ୱର—କି ମନୋହର ପ୍ରଭୁ ଯୀଶୁଙ୍କ ପଟାନ୍ତର ।

ପ୍ରଶ୍ନ । ହେ ପିଲାଗଣ !
କରୁଛ ଯୀଶୁଙ୍କୁ କି ପ୍ରେମ ? ଘୋଷା ।

ଉତ୍ତର । ହଁ, ଯୀଶୁ ବିନା କେହି ସୁନ୍ଦର ନ ଦିଶଇ ।
ଶାରୋଣ ଗୋଲାପରୁ ସେ ଅତି ମନୋରମ । ୧ ।

ହଁ, ସେହି ଯୀଶୁ ନାମ କର୍ଣ୍ଣକୁ ମନୋରମ ।
ନାହିଁ ନାହିଁ ସେପରି ଅନ୍ୟ ସୁମିଷ୍ଟ ନାମ । ୨ ।

ହଁ, ସେ ପିଲାମାନଙ୍କ ନରକୁଁ ତାରିବାକୁ ।
ନିଜ ଜୀବନ ଦେଲେ ନ କରିବୁଁ କି ପ୍ରେମ ? ୩ ।

ସେ ଅନନ୍ତ ଜୀବନ ପାପି ପୁଣ୍ୟ ବସନ ।
ତାଙ୍କ ବିନା କାହାକୁ କରିବା ହେ ଗମନ ? ୪ ।

ଆସ ହେ ପିଲାପିଲି ହୋଇ ସକଳ ମେଳି ।
କରିବା ତାଙ୍କୁ ପ୍ରେମ ସେହି ପ୍ରେମ ଭାଜନ । ୫ ।

[ମୁକୁନ୍ଦ ଦାସ ।

୨୬ । ( ଟିଙ୍ଗପିଙ୍ଗ ଦୁଇ ଦଳରେ ଗାଇବେ । )

ସ୍ୱର—ସୁମଙ୍ଗଳରୂପ ବାର ନବ ଦମ୍ପତ୍ତି ଉପର ।)

ପ୍ରଶ୍ନ । ପ୍ରଭୁ ଯୀଶୁ କ କାରଣ ତେଜି ସ୍ୱର୍ଗ ସିଂହାସନ ।
ମାନବରୂପ ଧରଣ ହୋଇଲେ ସେ ଜନ୍ମ ? ୧ ।

ଉତ୍ତର । ପ୍ରେମ କରି ସେ ଆମ୍ଭକୁ ନେବାକୁ ସ୍ୱର୍ଗପୁରକୁ ।
ଆଇଲେ ମର୍ତ୍ତ୍ୟପୁରକୁ ପାପୁଁ ତାରିବାକୁ । ୨ ।

ପ୍ରଶ୍ନ । କପାଁ ହୋଇ ଧନହୀନ ଦୁଃଖେ କାଟିଲେ ଜୀବନ ।
ନ ଥିଲା ତାଙ୍କ କାରଣ ଜଗତରେ ସ୍ଥାନ ? ୩ ।

ଉତ୍ତର । ଅକ୍ଷୟ ସ୍ୱର୍ଗ କଣାନ କରିବାକୁ ସେହି ଦାନ ।
ଆମ୍ଭର ଦେବାକୁ ଧନ ହେଲେ ଧନହୀନ । ୪ ।

ପ୍ରଶ୍ନ । କପାଁ ହେଲେ ସେ ନିନ୍ଦିତ ହେଲେ କେତେ ଭୁଚ୍ଛୀକୃତ ।
ନାନା ମତ ଅବଜ୍ଞାତ ହୋଇଲେ ସତତ ? ୫ ।

ଉତ୍ତର । ଧର୍ମ ଦୂତଙ୍କର ମତ ଆମ୍ଭମାନଙ୍କୁ ସମ୍ମତ ।
କରଣେ ଆପେ ନିନ୍ଦିତ ବୋଲ୍ ଜପ ଗୀତ । ୬ ।

ପ୍ରଶ୍ନ । ବିନା ଦୋଷେ କପାଁ ସେହି କୋରଡ଼ା ପ୍ରହାର ସହି ।
ନିଜ ମୁଖ ନ ଫିଟାଇ ଥିଲେ ମୌନ ହୋଇ ? ୭ ।

ଉତ୍ତର । ଅମ୍ଭ ଦୋଷ ସବୁ ପାପ ଦେଲା ତାଙ୍କୁ ଏ ସନ୍ତାପ ।
ଅଦୋଷେ ଭୋଗିଲେ ଶାପ ଧିକ ଧିକ ପାପ । ୮ ।

ପ୍ରଶ୍ନ । କପାଁ ଦେଲେ ସେ ଜୀବନ ସହିଣ ନାନା କଷଣ ।
ଦୋଷୀ ମତ ହେଲେ ହତ କହେତୁ ଏମନ୍ତ ? ୯ ।

ଉତ୍ତର । ଅନନ୍ତ ମୃତ୍ୟୁରୁ ସେହି ଅମ୍ଭକୁ ତାରିବା ପାଇଁ ।
ହୋଇଣ ଅମ୍ଭ ମଧ୍ୟସ୍ଥ ଆପେ ହେଲେ ହତ । ୧୦ ।

ପ୍ରଶ୍ନ । କପାଁ ହୋଇ ଧାର ଧାର ବହିଲା ତାଙ୍କ ରୁଧିର ।
ପାଇ କି ଦେଇ ଉତ୍ତର ମୋର ଏ ପ୍ରଶ୍ନର ? ୧୧ ।

ଉତ୍ତର । ଆମ୍ଭର ଯେଉଁ ଦୁରିତ ଅଟଇ ହିନ୍ଦୁର ମତ ।
ହେବାକୁ ତହୁଁ ପବିତ୍ର କଲେ ରକ୍ତପାତ । ୧୨ ।

( ସମସ୍ତେ ଏକା ସଙ୍ଗରେ ଗାଇବ । )

ଆମ୍ଭଙ୍କୁ ଯେ କଲ ପ୍ରେମ ପ୍ରେମରେ ଦେଲେ ଜୀବନ ।
ଧନ୍ୟ ସେ ଯୁବାମେଷଙ୍କୁ ଧନ୍ୟ ହେଉ ତାଙ୍କୁ ୧୩ ।

---

[ମୁକୁନ୍ଦ ଦାସ ।

୨୨ । ( ଦୁଇ ଦଳର ଗାୟନ । )

ସ୍ୱର— କେଦାର ।

ପ୍ରଥମ ଦଳ । ଯଦ୍ୟପି ପାପିଷ୍ଠ ମୂଢ଼ ଅଜ୍ଞାନ ।
ମୋର ଏତାଙ୍କୁ କଲେ ଗୁଣଜ୍ଞାନ । ୧ ।
ଦ୍ୱିତୀୟ ଦଳ । ତଥାପି ସେ ମୋ ଶାରୋଣ ଗୋଲାପ ।
କେତେ ମହଙ୍କ ଦିଏ ତା! ସୌରଭ । ୨ ।
ପ୍ରଥମ ଦଳ । ଯଦ୍ୟପି ହେଲେ ଲୋକରେ ନିନ୍ଦିତ ।
କେହି ବୋଲେ ଏ ପାପି ଭୂତଗ୍ରସ୍ତ । ୩ ।
ଦ୍ୱିତୀୟ ଦଳ । ତଥାପି ଯୀଶୁ ମୋହର ଗୌରବ ।
ମୋତେ ସବୁଠୁଁ ଦିଶନ୍ତି ସୌଷ୍ଠବ । ୪
ପ୍ରଥମ ଦଳ । ଯଦି କେହି ବୋଲିଥିଲା ଏମନ୍ତ ।
ସେ ମୁଖ ଘୋଡାଇବା ଲୋକ ମତ । ୫ ।
ଦ୍ୱିତୀୟ ଦଳ । ତଥାପି ସେ ମୋର ପୁଣ୍ୟ ବସନ ।
ପିନ୍ଧିଥିଲେ ଦିଶେ ମନୋରଞ୍ଜନ । ୬ ।
ପ୍ରଥମ ଦଳ । ଯଦି କେହି ବୋଲିଥିଲା ଏରୂପ ।
ସେହି ଦୃଷ୍ଟିକି ନ ଦିଶେ ସୁରୂପ । ୭ ।
ଦ୍ୱିତୀୟ ଦଳ । ତଥାପି ନର ସନ୍ତାନଁ ସୁନ୍ଦର ।
କୃପାଭିଷିକ୍ତ ତାଙ୍କ ଓଷ୍ଠାଧର । ୮ ।

ପ୍ରଥମ ଦଳ । ଯଦ୍ୟପି ଶୁଷ୍କ ଭୂମି ଚେରପଣ ।
ଲୋକେ ବୋଇଲେ ବଡେ ସେ ସେପଣ । ୯ ।
ଦ୍ୱିତୀୟ ଦଳ । ତଥାପି ତାଙ୍କରେ ମୋର ରକ୍ଷଣ ।
ପ୍ରବଳ ବଳିରେ ମୋର ଶରଣ । ୧୦ ।
ପ୍ରଥମ ଦଳ । ଯଦ୍ୟପି ପିଠିରେ କୋଡା ପ୍ରହାର ।
ଦାଗ ଦିଶୁଥିଲା କି ଚମତ୍କାର । ୧୧ ।
ଦ୍ୱିତୀୟ ଦଳ ।ତଥାପି ସେହି ମୋର ଉପଶମ ।
ସେହି ପ୍ରହାରେ ମୋ ରୋଗ ମୋଚନ ।
ପ୍ରଥମ ଦଳ । ଯହିଁ ନାନାଦି ଥୁକାର ବଚନେ ।
ଲେପ ପକାଇ ଥିଲେ ଶ୍ରୀବଦନେ । ୧୩
ଦ୍ୱିତୀୟ ଦଳ । ତଥାପି ଦିଶେ ମୋତେ କି ସୁନ୍ଦର ।
ତାଙ୍କୁ ସର ନୁହଇ ଦିବାକର । ୧୪ ।
ପ୍ରଥମ ଦଳ । ଯହିଁ କଣ୍ଟା ଅଘାତେ ତାଙ୍କ ଗାତ୍ର ।
ଦିଶୁଥିଲା ଅତି କ୍ଷତବିକ୍ଷତ । ୧୫ ।
ଦ୍ୱିତୀୟ ଦଳ । ତଥାପି ସେ ମୋ ସର୍ବାଙ୍ଗେ ସୁନ୍ଦର ।
ତାଙ୍କ ପରି ଆଉ କି ମନୋହର । ୧୬ ।
ଯେତେ ପ୍ରକାରେ ବୋଲନ୍ତୁ ଯେ ଯେତେ ।
ମୋତେ ଦିଶନ୍ତି ସୁନ୍ଦର ସେ ତେତେ । ୧୭ ।

[ମୁକୁନ୍ଦ ଦାସ ।

---

୨୮ । TUNE—*The Golden Shore.*

ସବୁ ଦୁଃଖ ହେବ ଦୂର ବେଗେ ଯିବା ସେ ବନ୍ଦର ।
ଯାଉଅଛୁଁ ସେ କୂଳକୁ ଅମ୍ଭେ ନିଜ ଗୃହକୁ ।
ଯାଉଅଛୁଁ ସେ କୂଳକୁ ଅମ୍ଭେ ନିଜ ଗୃହକୁ ।

ସାଗରରେ ନାବୋପରେ ଚଳୁଛୁଁ ଧୀରେ ଧୀରେ ।
ଯାଉଅଛୁଁ ସେ କୂଳକୁ ଅମ୍ଭେ ନିଜ ଗୃହକୁ । ୧ ।

ଲକ୍ଷ ଲକ୍ଷ ଗଲେ ତରି ସେ ସୁବର୍ଣ୍ଣ ତୀରକୁ ।
ଲକ୍ଷ ଲକ୍ଷ ଯାଉଛନ୍ତି ସ୍ଥାନ ଅଛି କୋଟିଙ୍କୁ । ୨ ।
ବହୁଥାଏ ଯେତେବେଳେ ସ୍ୱର୍ଗୀୟ ସୁସମୀର ।
ନାବ ଭସି ଅଗେ ଯିବ ପାଲ କର ବସ୍ତାର । ୩ ।
ବନ୍ଦାନ୍ତୁଲେ ପରିତ୍ରାଣ ଏହି ଦବ୍ୟ କୀର୍ତ୍ତନ ।
ନାବସ୍ଥିତ ଦଳଜନ କର ହୃଷ୍ଟେ ଗାୟନ । ୪ ।
ଯେତେବେଳେ ବନ୍ଦରରେ ପହୁଞ୍ଚିବା କୁଶଳେ ।
କ୍ଲେଶ ଶେଷ ହେଲା ବୋଲି ଗାଇବା କୋଳାହଳେ । ୫ ।
ଅମରପୁରେ ପ୍ରବେଶ କରିଅଡେ଼ ଭୁଲିବା ।
ଅନନ୍ତକାଳ ପର୍ଯ୍ୟନ୍ତେ ମିଷ୍ଟଗାନ କରିବା । ୬ ।

[ଦାନଏଲ୍ ମହାନ୍ତି ।

---

୨୧ । TUNE—*Dismissal.*

ଅମ୍ଭେ ପିଲାପିଲିଗଣ ହୋଇଣ ସଂମିଳନ ।
କରିଅଛୁଁ ଅଗମନ ଶୁଣି ନିଜ ବଚନ ।
ହୁଅ ପ୍ରଭୁ ହୁଅ ପ୍ରଭୁ ଅମ୍ଭ ପ୍ରତି ପ୍ରସନ୍ନ । ୧ ।
ଡାକୁଛ ପ୍ରଭୁ ପିଲାଙ୍କୁ ଅଶୀର୍ବାଦ ଦେବାକୁ ।
ଏଣୁ ତବ ଶ୍ରୀମୁଖକୁ ଅସିଛୁଁ ଲୋଡିବାକୁ ।
ଢାଳ ପ୍ରଭୁ ଢାଳ ପ୍ରଭୁ ଅଶୀର୍ବାଦ ପିଲାଙ୍କୁ । ୨ ।
ଅମ୍ଭେମାନେ ପାପେ ଜାତ ପାପ କଳଙ୍କଯୁକ୍ତ ।
କର ଖ୍ରୀଷ୍ଟ ରକ୍ତେ ଧୌତ ହେବା ସୁପରିଷ୍କୃତ ।
କର ପ୍ରଭୁ କର ପ୍ରଭୁ ହୃଦୟଁ ପରିଷ୍କୃତ । ୩ ।
ଦେବା ପାଇଁ ନୂଆ ମନ କରୁଛ ନିମନ୍ତ୍ରଣ ।
ଘୁଞ୍ଚାଅ ଅମ୍ଭ କୁମନ କର ପ୍ରଭୁ ନୂତନ
ଏଥିପାଇଁ ଏଥିପାଇଁ କର ଧର୍ମାତ୍ମ ଦାନ । ୪ ।

ତୁମ୍ଭ ପ୍ରତି ଭୟ ପ୍ରେମ   କର ମନେ ଉତ୍ପନ୍ନ ।
ତୁମ୍ଭ ବିଷୟିକ ଜ୍ଞାନ   କର ନିତ୍ୟ ବର୍ଦ୍ଧନ ।
କର ଆମ୍ଭ କର ଆମ୍ଭ   ଜ୍ଞାନଚକ୍ଷୁ ପ୍ରସନ୍ନ । ୫ ।
ଆମ୍ଭେ ପିଲାପିଲୀଗଣ   କରୁଛୁ ନିବେଦନ ।
ହୋଇ ପ୍ରସନ୍ନ ବଦନ   କର ଏହା ଗ୍ରହଣ ।
କର ନିତ କର ନିତ   ଅନୁଗ୍ରହ କଲ୍ୟାଣ । ୬ ।

[ମୁକୁନ୍ଦ ଦାସ ।

---

୫୦ ।  ସ୍ୱର—ଅହେ ଯୀଶୁ ତବ ପ୍ରିୟ ମନେ ।

ଅହେ ଯୀଶୁ ଶାରୋଣ ଗୋଲାବ ।
ମୋ ଦୃଷ୍ଟିରେ ଅଟ କି ସୌଷ୍ଠବ । ଘୋଷା ।

ଉଦ୍ୟାନେ କିବା ଗହନେ ଯେତେ ଥାନ୍ତି ପୁଷ୍ପମାନେ ।
ସେ ସର୍ବର ଯୀଶୁ ତୁମ୍ଭେ କି ସୌରଭ । ୧ ।

ଡାଲିମ୍ବ ସୁଗନ୍ଧ ସମ ଅଟେ ତୁମ୍ଭ ପ୍ରିୟ ନାମ ।
ସର୍ବ ମଣ୍ଡଳୀର ଅଟ କି ଗୌରବ । ୨ ।

ତୁମ୍ଭେ ଅନ୍ୟର ପ୍ରିୟରୁ ଅଟ ହେ ଅଧିକ ଶ୍ରେୟ ।
ଦଶ ସହସ୍ରରେ ତୁମ୍ଭେ କି ଅପୂର୍ବ । ୩ ।

ଅହେ ସର୍ବାଙ୍ଗ ସୁନ୍ଦର ମୋତେ କେବେ ନ ପାସୋର
କଟାକ୍ଷେ ଅନାଅ ଯୀଶୁ ପ୍ରାଣଧବ । ୪ ।

[ମୁକୁନ୍ଦ ଦାସ ।

---

୫୧ ।  TUNE—*There is a Happy Land.*

ଅଟେ ସୁଖ ଦେଶ ଅତି ଦୂର ।
ତହିଁ ନାହିଁ କ୍ଳେଶ ଧର୍ମପୁର ।
ସାଧୁଗଣ ନିତ, ପ୍ରଭୁ ସ୍ତୁତି କରନ୍ତି ।
ହେଉ ଜୟ ତାଙ୍କର ନିରନ୍ତର ।

ସେ ରମ୍ୟ ଦେଶକୁ ଯିବା ଆସ ।
ନ କରି ଅଳସ ଅବିଶ୍ୱାସ ।
ଭୋଗିବା କି ସୁଖ, ନ ଥିବ ପାପ ଦୁଃଖ ।
ନିତ୍ୟ ଦେଖିବା ପ୍ରଭୁଙ୍କ ମୁଖ । ୨ ।

ସେ ସୁନ୍ଦର ଦେଶବାସୀଗଣ ।
ରହି ପିତା ହସ୍ତେ ତେଜବାନ ।
ଆସ ଆମ୍ଭେ ଧାଇଁ ସେ ସଙ୍ଗ ହେବା ପାଇଁ ।
ରହିବା ସ୍ୱର୍ଗରେ ଗୌରବରେ । ୩ ।

---

୩୨ । (ନୂଆ ବର୍ଷ ।)

ସ୍ୱର—ଅହା କି ଆନନ୍ଦରେ ।

ଅହା କି ଆମୋଦରେ ପଡଇ ଦୃଷ୍ଟି ଏ ନୂଆ ବର୍ଷ ଉପରେ । ଘୋଷା ।

ଆସିଛୁ ଏ ନୂଆ ବର୍ଷ କି ମନୋହରେ ।
ହୋଇ ବିଭୂଷିତ କଲ୍ୟାଣ ମୁକୁଟରେ । ୧ ।

ଗତ ବାର ମାସ ବଞ୍ଚିଲୁଁ କୁଶଳରେ ।
ହେଉ ଏ ନୂଆ ବର୍ଷ ଭୋଗ ମଙ୍ଗଳରେ । ୨ ।

ଆଜ ବାର୍ଷିକ ପାଠଶାଳା ଉତ୍ସବରେ ।
ହୋଇ ଅତି ଆନନ୍ଦିତ ଗାଇ ସୁସ୍ୱରେ । ୩ ।

ପଡୁ ପ୍ରଭୁ ଦୃଷ୍ଟି ପିଲାପିଲି ଉପରେ ।
ତୁମ୍ଭ ଶ୍ରମୁରେ ଏ ବର୍ଷ ବଞ୍ଚୁଁ କୁଶଳେ । ୪ ।

କର ହେ ପ୍ରଭୁ କଲ୍ୟାଣ କୃପା ଦୃଷ୍ଟିରେ ।
ବଢୁ ଧର୍ମଜ୍ଞାନ ଏ ବର୍ଷ ଆଧିକ୍ୟରେ । ୫ ।

ସ୍ୱାସ୍ଥ୍ୟ ମଙ୍ଗଳ ସୁଭିକ୍ଷ ବାହୁଲ୍ୟତାରେ ।
ବ୍ୟାପୁ ଏ ବର୍ଷ ଆମ୍ଭ ଉତ୍କଳ ଦେଶରେ । ୬ ।

ପ୍ରଭୁ ହୁଅ ପ୍ରସନ୍ନ ପିଲାଙ୍କ ଉପରେ ।
ଢାଳ ତବ କରୁଣା ଜଳ ଏ ବର୍ଷରେ । ୭ ।

---

[ମୁକୁନ୍ଦ ଦାସ ।]

୩୩ । TUNE—*Come to the Saviour.*

ଯୀଶୁ ମୋ ପ୍ରିୟ ପ୍ରାଣଧବ
ଅଟେ କି ମିଷ୍ଟ ତାଙ୍କ ରବ ।
ଶୁଣେ ମୋ କର୍ଣ୍ଣେ ମନୋହର ।
ହୁଏ ଦୁଃଖ ଦୂର । ଘୋଷା ।
ଅହା ତାଙ୍କ ମିଷ୍ଟ ବଚନ ।
ଘୁଞ୍ଚାଏ ସନ୍ତାପ ବେଦନ ।
ପୁଣି କରେ ତା ଯେ ପାଳଣ ।
ଭୋଗେ ସ୍ୱର୍ଗ ଧାମ ।
*Chorus*—ଯୀଶୁ ମୋ ପ୍ରିୟ ପ୍ରାଣଧବ । ଇତ୍ୟାଦି । ୧ ।
ପିତର ଯାକୁବ ଅନ୍ଦ୍ରିୟ ।
ମାଥିଉ ଯୋହନ ଜଣିୟ ।
ଶୁଣି ସେହି ଡାକ ବହନ ।
କରିଲେ ଗମନ ।
*Chorus*—ଯୀଶୁ ମୋ ପ୍ରିୟ ପ୍ରାଣଧବ । ଇତ୍ୟାଦି । ୨ ।
ଅସ ସକଳ ପିଲାଗଣ ।
କରନ୍ତୁ ଏତା ନିମନ୍ତ୍ରଣ ।
ଶୁଣି ରବ ନ ବୁଜ କର୍ଣ୍ଣ ।
ଅସ ହେ ବହନ ।
*Chorus*—ଯୀଶୁ ମୋ ପ୍ରିୟ ପ୍ରାଣଧବ । ଇତ୍ୟାଦି । ୩ ।

[ମୁକୁନ୍ଦ ଦାସ ।

୩୪ । TUNE—*Hold the Fort.*

ଧର୍ମ ଅବତର୍ଷ ସ୍ୱିକିଦାତା ଯୀଶୁଙ୍କୁ ।
ସର୍ବ କର୍ମେ କର ଲକ୍ଷ୍ୟ ସିଦ୍ଧ ଅଗ୍ରକୁ । ଘୋଷା ।
ନିଷ୍କଳଙ୍କ ନିଦର୍ଶନ ମଣି ତାହାଙ୍କୁ ।
ହେବ ଅଗ୍ରସର ସର୍ବ ଧର୍ମ କର୍ମକୁ । ୧ ।

କରିବି ଧାରଣ ତାଙ୍କ ସଦ୍ଭାବକୁ ।
ମୋର ମନୋହର ଭୂଷଣ ମଣି ତାଙ୍କୁ । ୨ ।

ତାଙ୍କ ବିନା ଦୃଷ୍ଟିରେ ନ ରଖି ଅନ୍ୟକୁ ।
ନ କରିବି ଗମନ ଡାହାଣ ବାମକୁ । ୩ ।

ହେଲେ କି ଦୁଷ୍ଟ ପିତା ଘରେ ରହିବାକୁ ।
ମୁଁ କି ହେଳା କରିବି ସେଠାକୁ ଯିବାକୁ ? ୪ ।

କି ଉଦ୍ଯୋଗି ହେଲେ ପ୍ରାର୍ଥନା କରିବାକୁ ।
ତେବେ ମୁହିଁ କି ପାସୋରିବି ପ୍ରାର୍ଥନାକୁ ? ୫ ।

କଲେ ଦୟା ଦେଖି କେତେ ଦୁଃଖିମାନଙ୍କୁ ।
ମୁଁ କି କରିବି କଠିଣ ମୋର ମନକୁ ? ୬ ।

ହେଲେ କି ସୁଶୋଭିତ ପିନ୍ଧି ନମ୍ରତାକୁ ।
ମୁଁ କି ନ କରିବି ଦୂର ମନୁ ଗର୍ବକୁ ? ୭ ।

ହୋଇ କି ସହିଷ୍ଣୁ ଜୟ କଲେ କ୍ଳେଶକୁ ।
ମୁଁ କି ହୋଇବି ଆକୁଳ ଦେଖି ଦୁଃଖକୁ ? ୮ ।

ନିନ୍ଦା ସହି ହିଂସା ନ କଲେ ସେ କାହାକୁ ।
ମୁଁ କି ମନେ ସ୍ଥାନ ଦେବି କ୍ରୋଧ ହିଂସାକୁ ? ୯ ।

ଅଟେ ମୋ କର୍ତ୍ତବ୍ୟ ତାଙ୍କ ତୁଲ୍ୟ ହେବାକୁ ।
ତାଙ୍କ ପାଦ ଚିହ୍ନ ଦେଇ ଯିବି ସ୍ୱର୍ଗକୁ । ୧୦ ।

---

[ମୁକୁନ୍ଦ ଦାସ ।

୩୫ । (ରବିବାର ପାଠଶାଳାକୁ ଯିବାକୁ ଡକାଡକି ।)

ସ୍ୱର—ଅସ୨ ହେ ଜଳ ନିକଟେ ତୃଷିତ ।

ଅସ ଯିବା ହେ ଶାବୃତ ପାଠଶାଳାକୁ ।
ଅନନ୍ତ ଜୀବନ ବିଷୟକ ଜ୍ଞାନ ଯହିଁ ମିଳଇ ପିଲଙ୍କୁ । ଘୋଷା ।

ପାପ ନରକର ଆବର ମୃତ୍ୟୁର ସର୍ବ ପରାକ୍ରମ ଜିଣି ।
ଅତି ପ୍ରଭାତରେ ଖ୍ରୀଷ୍ଟ ମହାଚେରୁ କବରରୁ ଉଠିଲେଣି । ୧ ।

ଆସ ସଙ୍ଗୀଗଣ ଯାଇ ହେ ବହନ ସେହି କବର ସ୍ଥାନକୁ ।
ବିପକ୍ଷଙ୍କ ଚେଷ୍ଟା ହୋଇଅଛି ବୃଥା ଯେଉଁଠୁଁ କାଲକାଲକୁ । ୨ ।

ଅତି ପ୍ରଭାତରୁ ଦୂତ ସ୍ୱର୍ଗପୁରୁ ଆସନ୍ତେ ଦେଖି ପ୍ରହରୀ ।
ଭୟେ କମ୍ପାନ୍ୱିତ ହୋଇ ସେ ସମସ୍ତ ପଡଗନ୍ତି ମଲାପରି । ୩ ।
ଆସ ହେ ସତ୍ୱର ପ୍ରମାଣ ନିଜର ଖ୍ରୀଷ୍ଟ ପୁନରୁତ୍ଥାନର ।
ପାଇ ଅମ୍ଭେମାନେ ନିରୁତ୍ତର ଯେହ୍ନେ କରିବା ବିପକ୍ଷଙ୍କୁ । ୪ ।
ମରିୟମ ଅଦି ସୁଗନ୍ଧି ଦ୍ରବ୍ୟାଦି ଘେନି ଅତି ପ୍ରଭାତରୁ ।
ନିଦ୍ରା ଦୂରେ ତେଜି ଖ୍ରୀଷ୍ଟ କଥା ହେଜି ଗଲେଣି ସେ ନିଜ ଘରୁ । ୫ ।
ଅମ୍ଭେର ତେସନ ଏ କୋମଳ ମନ ପ୍ରଭୁ ଯୀଶୁଙ୍କୁ ଦେବାକୁ ।
ସୁପ୍ରସ୍ତୁତ ଭାଇ ହୋଇବା ହେ ଯହିଁ ଚାଲ ସେ ପାଠଶାଳାକୁ । ୬ ।
ଖଗୋଳ ଭୂଗୋଳ ଏ ବିଦ୍ୟା ସକଳ ଲୋଡା ସେ ଇହକାଳକୁ ।
ଖ୍ରୀଷ୍ଟରୂପ ଜ୍ଞାନ ମହା ପ୍ରୟୋଜନ ଅଟଇ ଇହପରକୁ । ୭ ।

---

୩୬ । (ଧନ୍ୟ ଯୁବା ।)

ସ୍ୱର—ତୁମେ କ ବଲ୍ ମୁ ମୂଢ ଭୂଲିଲ ।

ଧନ୍ୟ ଧନ୍ୟ ବୋଲି ସେହି ଯୁବାକୁ ।
ଯୌବନ କାଳରେ ଅପଣା ମନରେ ସ୍ମରଇ ଯେ ସୃଷ୍ଟିକର୍ତ୍ତାଙ୍କୁ । ଘୋଷା ।

ବାଲ୍ୟକାଲୁ ଭୟ କରେ ପ୍ରଭୁଙ୍କୁ ମନେ ଘୃଣା କରି ସର୍ବ ପାପକୁ ।
ପ୍ରଭୁଙ୍କ ଶାସ୍ତ୍ରରେ ସଦା ଅମୋଦଇ ଧ୍ୟାନ ଧନ ଜାଣି ତାହାକୁ । ୧ ।

ଆପଣାର ସବୁ ଭାର ପ୍ରଭୁରେ ସଦା ରଖାଇ ଥାଇ ସେ ଦୃଢରେ ।
ତାଙ୍କ ବଳବନ୍ତ ହସ୍ତ ତଳେ ଥାଏ ନମ୍ର କରି ନିଜ ମନକୁ । ୨ ।

ଯେବେ ଶତ୍ରୁଗଣ ତାର ପ୍ରବଳ ଖ୍ରୀଷ୍ଟ ଯୀଶୁଙ୍କୁ ମାଗିଣ ସେ ବଳ ।
ସେହି ବଳ ଘେନି ଯୁଦ୍ଧ କରି ଶେଷେ ଖର୍ବ କରେ ଶତ୍ରୁଗଣଙ୍କୁ । ୩ ।

ଯଦି ଗର୍ବ ହିଂସା ଆଦି କୁଭାବ ତାର ମନରେ ହୁଅଇ ଉଦ୍ଭବ ।
ପ୍ରଭୁଙ୍କ ବାକ୍ୟକୁ ମନେ ଧ୍ୟାନ କରି ଦମନ କରେ ସେ ସବୁକୁ ।

---

୩୭ । (ଧନ୍ୟ ଯୁବା ।)

ସ୍ୱର—ଯୀଶୁ ଶରଣ ମୁ ନେଇ ।

ଧନ୍ୟ ଧାମ୍ମିକ ତରୁଣ ।
ଚଳେ ଯେ ସ୍ୱର୍ଗୀୟ ପଥେ ହୋଇ ସାବଧାନ । ଘୋଷା ।

ପ୍ରଭୁ ପ୍ରତି ଭୟ ରଖି ନିତ୍ୟ ତାଙ୍କ ବାକ୍ୟ ଶିଖି ।
କୁକର୍ମ ସବୁ ଉପେକ୍ଷି ଧର୍ମେ ବର୍ଦ୍ଧମାନ । ୧ ।

ତ୍ରାଣକର୍ତ୍ତା ଖ୍ରୀଷ୍ଟ ପ୍ରତି ରଖି ଭକ୍ତିମତି ନିତି ।
ହୁଏ ତାଙ୍କ ପଶ୍ଚାଦ୍ବର୍ତ୍ତୀ ଖୋଜି ପଦ ଚିହ୍ନ । ୨ ।

ଧର୍ମଗୁରୁଙ୍କ ଇଚ୍ଛାମତ କରଇ କର୍ମ ସତତ ।
ତାଙ୍କର କୃପା ପ୍ରାର୍ଥନା ଅଟେ ଅନୁଦିନ । ୩ ।

କୁସଂସର୍ଗ ପାନ ଦୋଷ ତ୍ୟାଗ କରଇ ନିଃଶେଷ ।
ଖ୍ରୀଷ୍ଟର ପ୍ରେମ ପୀୟୂଷ ପାନେ ତୃପ୍ତ ମନ । ୪ ।

କ୍ରୋଧ ହିଂସା ଅଭିମାନ ଅନ୍ତରେ ନ ପାନ୍ତି ସ୍ଥାନ ।
ଆନ୍ତରିକ ଧର୍ମ କର୍ମେ ଉତ୍ତପ୍ତ ଯା ମନ । ୫ ।

ନୂଆ ନୂଆ ବଳ ପାଏ ଉତ୍କ୍ରୋଶ ପକ୍ଷିର ପ୍ରାଏ ।
ଧର୍ମ ବାଟରେ ଚଳେ ଯେ ହୋଇ ବେଗବାନ । ୬ ।

ଶ୍ରାନ୍ତ ନୋହି ଦଉଡଇ କ୍ଳାନ୍ତ ନ ହୋଇ ଚାଲଇ ।
ଶେଷେ ପୁରସ୍କାର ପାଇ ହେବ ହୃଷ୍ଟ ମନ । ୭ ।

---

୩୮ । (ଧର୍ମଗୁରୁଠାରେ ପ୍ରାର୍ଥନା ।)

ସ୍ୱର—ମନର ହେବ କି ଅନ୍ତର ଯୀଶୁ ନାମ ।

ପିତା ପୁତ୍ର ଧର୍ମଗୁରୁ କର ସୁକଲ୍ୟାଣ ।
ଯେତ ଶିକ୍ଷା ଅମ୍ଭ ମନେ ଦେଲନ୍ତି ଆପଣ । ଘୋଷା ।

[ଶାଳାରେ ।
ସେ ସକଳ ଶିକ୍ଷା ଏବେ ପାଉଅଛୁଁ ଆମ୍ଭେ ସର୍ବେ ଏହି ତବ ପାଠ-
ଗୃହେ ବସି ଥିବା କାଳେ କିବା ବାଟେ ଯିବାବେଳେ
ଶୟନେ ଜାଗନେ ମନେ ରହୁ ସର୍ବକ୍ଷଣ ।

ବିଦ୍ୟା ବୁଦ୍ଧି ଧର୍ମଜ୍ଞାନ ସକଳ ତବ ଅଧୀନ ସକଳର ଦାତା ଆପଣ ।
ମାଗୁଣି ତବ ଛାମୁରେ ମାଗି ଏହା ନିରନ୍ତର ।
ପ୍ରାପ୍ତ ଶିକ୍ଷା ମତେ ହେଉ ଆମ୍ଭ ଆଚରଣ । ୨ ।
ତବ ପ୍ରତି ପ୍ରେମ ଭକ୍ତି ସୁଶୀଳତା ଧର୍ମ ଭୀତି ହେଉ ଆମ୍ଭ ମସ୍ତକ ଭୂଷଣ
ତହିଁ ପରେ ଖ୍ରୀଷ୍ଟ ରତ୍ନ ପକାନ୍ତୁ ନିଜ କରଣ ।
ଆମ୍ଭର ସର୍ବାଙ୍ଗ ଶୋଭା କରୁ ସେ ଭୂଷଣ । ୩ ।

---

୩୯ । ସ୍ୱର—ହେଅ ହେ ପଥଦର୍ଶକ ମୋର ।

ଦୟ ହେ ପ୍ରଭୁ ଆଶିଷ ବର ।
ଏହି ସାନ ଶିଷ୍ୟପିଲ୍ଲ ଉପର । ଘୋଷା ।

ବାଲ୍ୟ ବୁଦ୍ଧି ମୋର ଅତି ଚଞ୍ଚଳ ସ୍ଥିର କରୁ ତୁମ୍ଭ ଆଜ୍ଞାର ବଳ । ୧ ।
ଯହିଁ ଦିନୁଦିନ ବଢେ ଶରୀର ଧର୍ମ ଗୁଣେ ତାକୁ ବର୍ଦ୍ଧିଷ୍ଣୁ କର । ୨ ।
ଯୌବନ ବୟସ ଅଟେ ସତ୍ୱର ତା ପାଇଁ ଅଛନ୍ତି ଶତ୍ରୁ ଅପାର । ୩ ।
ସେହି କାଳେ ତୁମ୍ଭ ମହାବାହୁର ଶକ୍ତି ଦେଖି ଶତ୍ରୁ ପଳାଉ ଦୂର । ୪ ।
ଜୟ ଯୀଶୁ ଖ୍ରୀଷ୍ଟ ନାମର ବଳ ହେଉ ଦୃଢ ଗଡ ଢାଲ ମୋହର । ୫ ।
ସର୍ବଦା ମୋହର ଥାଅ ସଙ୍ଗର ମୋ ଚିତ୍ତରେ ବାସ ହେଉ ତୁମ୍ଭର । ୬ ।
ମୋ ଜୀବାତ୍ମା ଭାର ତୁମ୍ଭ ପୟର ପକାଇଥାଇ ମୁଁ ହେବ ଉଦ୍ଧାର । ୭ ।
ଶେଷେ ପ୍ରଭୁ ଯେତେ ଦୁର୍ଗତି ପାର କରି ଘେନ ମୋତେ ଶ୍ରୀଚରଣର । ୮ ।

---

୪୦ । TUNE—*Innocents.*

ଆସ ଆନନ୍ଦ ହୋଇ ।
ପ୍ରଭୁ ପ୍ରଶଂସା ଗାଇ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଛଇ । ୧ ।

ଜଗତ ସେ ଆଦ୍ୟରେ ।
ପୂର୍ଣ୍ଣ କଲେ ଦୀପ୍ତିରେ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଟଇ । ୨ ।

ସମସ୍ତଙ୍କୁ ପାଳନ ।
କରନ୍ତି ଦିନୁଦିନ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଟଇ । ୩ ।

ଅରଣ୍ୟେ ସେ ଅଶିଷ୍ୟ ।
କଲେ ଯାକୁବ ବଂଶ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଟଇ । ୪ ।

ଦେଖି ଆମ୍ଭ ଦୁଃଖକୁ ।
କୋଳୁଁ ଦେଲେ ପୁତ୍ରକୁ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଟଇ । ୫ ।

ଏଣୁ ଗାଇବା ନିତ ।
ତାଙ୍କ ପ୍ରଶଂସା ସ୍ତୁତ ।
ଯେହେତୁ ଚିରସ୍ଥାୟୀ ।
ତାଙ୍କ କୃପା ଅଟଇ । ୬ ।

[ଶେମ ସାହୁ ।

୪୧ ।

(ଯୁବାମାନଙ୍କୁ ପରାମର୍ଶ ।)

ସ୍ୱର—କିପାଁ ମନରେ ଏତେ ଚିନ୍ତା ଭାବନା ।
କର ଯୌବନେ ଧର୍ମ କର୍ମ ସାଧନ ।
ବାଲ୍ୟକାଳରୁ କର ପ୍ରଭୁ ଭଜନ । ଘୋଷା ।

ଐହିକ ଧନାଦରେ ନ ଦିଅ ମନ ।
ସ୍ୱପନ ସମାନ ଜାଣ ଅଟେ ସେମାନ ।
ତହିଁରେ ତୃପ୍ତ ମନ   ନ ହୁଏ କଦାଚନ ।
ଧନ ପକ୍ଷି ସମାନ   ଉଡି ଯାଏ ବହନ ।
ଧନରେ ଦେଲେ ମନ   ବିନାଶେ ପ୍ରାଣ ଧନ ।
ଜଗତ ଧନ ସବୁ ଏସନ । ୧ ।

ଜ୍ଞାନୀ ଭାଗ୍ୟବାନ ସଲମାନ ଏକ ରାଜନ ।
ଧନ ଜ୍ଞାନରେ ଥିଲେ ସେ ସର୍ବ ପ୍ରଧାନ ।
ଭୋଗି କରି ସଂସାର   ବୋଇଲେ ଏପ୍ରକାର ।
ଅସାରରୁ ଅସାର   ସକଳହିଁ ଅସାର ।
ସ୍ରଷ୍ଟାଙ୍କୁ ଭୟ କରି   ହୋଇବ ଅଜ୍ଞାକାରି ।
ନରେ ଜୀବନ ସାର ଏ ଜାଣ । ୨ ।

ଯୀଶୁଙ୍କ ପାଖୁଁ ବିମୁଖ ହେଲେ ଯେସନ ।
ତେସନ ହେ ଯୁବାଗଣ ପାପକୁ ଜିଣ ।
ହୋଇ ତାର ବିରୁଦ୍ଧ   କର ହେ ନିତ୍ୟ ଯୁଦ୍ଧ ।
ମନରେ ଦିଅ ରାଜ୍ୟ   ଯୀଶୁଙ୍କୁ ମନେ ହେଜ ।
ତୁମ୍ଭ ମଙ୍ଗଳ ପାଇଁ ଅବତରିଲେ ସେହି ।
ଏଣୁ ତାହାଙ୍କ ଯୁଅଲି ଘେନ । ୩ ।

ଯୌବନରେ ଯେବେ ତାଙ୍କୁ ମନରେ କର ।
ଦେହ ମନ ତାଙ୍କୁ ଦେଇ ଭଜନ କର ।
ପ୍ରଭୁ ହେବେ ସହିତ   ହୋଇବ ଜଗଜ୍ଜିତ ।
ପାପକୁ ଜୟ କରି   ଭୋଗିବ ସ୍ୱର୍ଗପୁରୀ ।
ପରିତ୍ରାଣ ଗାମ୍ଭୀର୍ଯ୍ୟ କରି ଅନନ୍ତ ଦିନ ।
ଭୋଗିବ ସୁଖ ଶାନ୍ତି ବିଶ୍ରାମ । ୪ ।

୪୨ । TUNE—*Hanover.*

ଧୀର ଦୟାଳୁ ନମ୍ରଶୀଳ ଯୀଶୁ ।
ମୋତେ ଅନାଥ ମୁହିଁ ସାନ ଶିଶୁ । ୧ ।

ଦୟା କରି ଏ ଅଜ୍ଞାନ ପିଲାକୁ ।
ତୁମ୍ଭ କତକ ଦଅ ଅସିବାକୁ । ୨ ।

ତୁମ୍ଭ ପାଖକୁ ଅଣା ଯିବା ପାଇଁ ।
ମୋର ମନରେ ଏ ଇଚ୍ଛା ଅଛଇ । ୩ ।

ତୁମ୍ଭ ପାଖକୁ ଅଗମନ ମୋର ।
ଅହେ ପ୍ରିୟ ପ୍ରଭୁ ମନା ନ କର । ୪ ।

ଏ ସାନ ପିଲାକୁ ଦୟା କରିଣ ।
ତୁମ୍ଭ ରାଜ୍ୟରେ ଦଅ ବାସସ୍ଥାନ । ୫ ।

[ମୁକୁନ୍ଦ ଦାସ ।

---

୪୩ TUNE—*Hanover.*

ହେ ଯୀଶୁ ଉତ୍ତମ ମେଷପାଳକ
ଆଜ ଗୁଁ ହୁଅ ମୋର ରକ୍ଷକ । ୧ ।

ଏହି ସାନ ପିଲାକୁ ରକ୍ଷା କର ।
ଢାଲ କଲ୍ୟାଣ ମୋ ମୁଣ୍ଡ ଉପର । ୨ ।

ଏ ଅନ୍ଧାର ଗୁଁବେ ରହ ମୋ ପାଖେ ।
ମୋତେ ରକ୍ଷା କର ସକାଳ ଯାକେ । ୩ ।

ମୋହୋର ଏହି ସାନ ନିବେଦନ ।
ଦୟା କରିଣ ପ୍ରଭୁ ଯୀଶୁ ଘେନ । ୪ ।

[ମୁକୁନ୍ଦ ଦାସ ।

---

୪୪ । *Temperance Hymn.*

ନିଶା କି ନ କରଇ ସୁଖ ଆଶା ଦେଇ ଶେଷେ ଦୁଃଖ ଦଅଇ । ଘୋଷା ।

ପରିବାରେ ଯେବେ ତାକୁ ସ୍ଥାନ ମିଳଇ ।
ସୁଖ ମଙ୍ଗଳ ମିଳନ ହରି ନିଅଇ । ୧ ।
ଥିଲେହେଁ ଧନ ସମ୍ପତ୍ତି ସମ୍ପୂର୍ଣ୍ଣ ହୋଇ ।
କ୍ରମେ ନିଶା ସେ ସବୁ ହରଣ କରଇ । ୨ ।
ଦରିଦ୍ରତା ସଙ୍ଗେ ସଙ୍ଗେ ଘେନି ଆସଇ ।
ଋଣଗ୍ରସ୍ତ କରି ଘୋର ଚିନ୍ତା ଦଅଇ । ୩ ।
ସୁନାମ ସୁଖ୍ୟାତି ସବୁ ନାଶ କରଇ ।
ଯେଣେ ଗଲେ ତେଣେ ଲଜ୍ଜା ନିନ୍ଦା ଦଅଇ । ୪ ।
ଦେହର ସ୍ୱାସ୍ଥ୍ୟତା ସେହି ନାଶ କରଇ ।
ଆୟୁ ଥାଉଁ ଥାଉଁ କବରକୁ ଆଣଇ । ୫ ।
ତେବେ ତହିଁରେ ଆସକ୍ତ ହୋଇ କପାଇଁ ।
ଇହ ପର ସୁଖ ମୂର୍ଖ ଦେବ ହଜାଇ । ୬ ।

[ଶୋମ ସାହୁ ।

---

୪୫ । (ପ୍ରଭାତ ଗୀତ ।)

C. M.

ଉଦୟ ବେଳରେ ପ୍ରଭୁ ସୂର୍ଯ୍ୟକୁ କହନ୍ତି ।
ପୃଥିବୀସ୍ଥ ସମସ୍ତଙ୍କୁ କରି ଚାଲ ଦୀପ୍ତି । ୧ ।
ପୂର୍ବ ଦିଗେ ଉଠି ସେହି କି ତେଜ ଦେଖାଏ ।
ଥକା ମନ୍ଦା ସେ ନୋହିଣ ଧାଇଁ ଧାଇଁ ଯାଏ । ୨ ।
ଆହେ ବେଗେ ଉଠ ମନ ନିତ୍ୟ କର୍ମ ପାଳ ।
ସୂର୍ଯ୍ୟ ତୁଲ୍ୟ ପ୍ରତିଦିନ ସ୍ୱର୍ଗ ବାଟେ ଚାଲ । ୩ ।
ତେଣୁ ମୋ ଜୀବନ ସାର ନ ଯିବ ମିଥ୍ୟାରେ ।
ପ୍ରଭୁ ତାଙ୍କ ଆଶୀର୍ବାଦ ଦେବେ ନିରନ୍ତରେ । ୪ ।

[ମୁକୁନ୍ଦ ଦାସ ।

୪୬ । TUNE—*Whither, Pilgrim?*

ପ୍ରଥମ ଦଳ । ଅହେ ପ୍ରିୟ ଯାତ୍ରୀମାନେ ।
କେଉଁଆଡେ ଯାଉଛ ? ୧ ।

ଦ୍ୱିତୀୟ ଦଳ । ସ୍ୱର୍ଗାଜ୍ଞାରେ ଆମ୍ଭେମାନେ ।
ସ୍ୱର୍ଗଲୁ ଥାଇ ଜାଣିବ । ୨ ।

ତୃତୀୟ ଦଳ । ହୋଇ ତାଙ୍କ ଆଜ୍ଞାକାରି ।
ଗିରି ଖାଲ ପଦା ପାର ।
ସ୍ୱର୍ଗପୁରେ ଯାତ୍ରା ସାରି ।
ସେହିଠାରେ ରହିବା । ୩ ।

ପ୍ରଥମ ଦଳ । ଯାତ୍ରୀ, ତୁମ୍ଭ ଅଶା ଶୁଣି ।
ସେଠାରେ କି ପାଇବ ? ୪ ।

ଦ୍ୱିତୀୟ ଦଳ । ଅତି ଶୁକ୍ଳ ବସ୍ତ୍ର, ପୁଣି ।
ଗୌରବର ମୁକୁଟ । ୫ ।

ତୃତୀୟ ଦଳ । ତାଙ୍କ ଅନୁଗ୍ରହ ଦାନେ ।
ଈଶ୍ୱରଙ୍କ ବାସସ୍ଥାନେ ।
ସଦାବେଳେ ଆମ୍ଭେମାନେ ।
ସ୍ୱର୍ଗବାସି ହୋଇବା । ୬ ।

ପ୍ରଥମ ଦଳ । ଅହେ ଯାତ୍ରୀ, ଆମ୍ଭେମାନେ ।
ସଙ୍ଗେ ଯାଇ ପାରିବୁ କି ? ୭ ।

ଦ୍ୱିତୀୟ ଦଳ । ଅସ, ଅସ, ପ୍ରେମାଳାପେ ।
ସ୍ୱର୍ଗଲୁ ସେହି ସରିକ । ୮ ।

ତୃତୀୟ ଦଳ । ଯେତେ ଯାତ୍ରୀମାନେ ଯାନ୍ତି ।
ସବୁ ଅଶୀର୍ବାଦ ପାନ୍ତି ।
ପ୍ରଭୁ ଯୀଶୁ ସ୍ୱର୍ଗେ ଥାନ୍ତି ।
କରିବାକୁ ଗ୍ରହଣ । ୯ ।

[ଖ, ଇ: ହେବରଲେଟ ।

---

୪୭ । (ସନ୍ଧ୍ୟାକାଳ ପ୍ରାର୍ଥନା ।)

TUNE—*Jesus, Tender Shepherd, &c.*

ନମ୍ରଶୀଳ ପ୍ରଭୁ ଯୀଶୁ
  ମୋ ବିନୟ ଶୁଣନ୍ତୁ ।
ତୁମ୍ଭ ସାନ ମେଷ, ମୋତେ
  ଆଶୀର୍ବାଦ କରନ୍ତୁ । ୧ ।
ଅନ୍ଧକାରେ, ନିଦ୍ରାବେଳେ
  ମୋହ ପାଶେ ହେଉନ୍ତୁ ।
ସୂର୍ଯ୍ୟୋଦୟ ହେବା ଯାଏ
  ମୋତେ ରକ୍ଷା କରନ୍ତୁ । ୨ ।
ପାପ କ୍ଷମା ଦେଇ ମନେ
  ଆନନ୍ଦ ଜନ୍ମାଉନ୍ତୁ ।
ମୋହ ପ୍ରିୟବନ୍ଧୁମାନେ
  ଆଶୀର୍ବାଦ ପାଉନ୍ତୁ । ୩ ।
ଶେଷେ ତୁମ୍ଭ ପାଶେ ମୋତେ
  ବାସସ୍ଥାନ ଦେଉନ୍ତୁ ।
ପରଲୋକ ପ୍ରାପ୍ତ ହନେ
  ମୋତେ ସ୍ୱର୍ଗେ ନେଉନ୍ତୁ । ୪ ।

---

୪୮ । (ଯୁବାକାଳର ଭକ୍ତି ।)

TUNE—*Mylon.*

ଆସ ହୃଷ୍ଟ ଚିତ୍ତେ ପିଲା ପିଲି ହୋଇ ମେଳ ।
ଖ୍ରୀଷ୍ଟଙ୍କ ବଚନ ଶୁଣି ଛାଡ ମାୟାଁ ଖେଳ । ୧ ।
ଜଗତପତି ତୁମ୍ଭଙ୍କୁ ପ୍ରେମରେ ଅନାଇ ।
ଛାଡିଲେ ନିଜ ତେଜ ତୁମ୍ଭ ମଙ୍ଗଳ ପାଇଁ । ୨ ।

ଯେ ଖୋଜେ ତାଙ୍କୁ ଦର୍ଶନ ସେ ନିଶ୍ଚେ ପାଇବ ।
ଲୋଡେ ଯେ ତାଙ୍କ କରୁଣା ସେ ତାହା ଭୋଗିବ । ୩ ।
ତାଙ୍କୁ ଭଲ ନ ଜାଣିଲେ ଆଉ କାହିଁ ଭଲ ।
ତାଙ୍କୁ ସାର ନ ମଣିଲେ ଅସାର ସକଳ । ୪ ।
ଯାଅ ହେ ମିଥ୍ୟା ସଂସାର ଖାଲି ମନଭ୍ରମ ।
ଖ୍ରୀଷ୍ଟ ମାତ୍ର ମୁଖ୍ୟ ସାର ଅଟ ମନୋରମ । ୫ ।

[ମୁକୁନ୍ଦ ଦାସ ।

---

୪୧ । (ସର୍ବଦର୍ଶୀ ଈଶ୍ୱର ।)

C. M.

ସର୍ବଶକ୍ତିମାନ ପ୍ରଭୁ ତୁମ୍ଭ ଶ୍ରୀ ନୟନ ।
ଘୋର ଅନ୍ଧକାର ମଧ୍ୟେ କରଇ ଦର୍ଶନ । ୧ ।
ଅତିଗୁପ୍ତ କଥା ଅବା ଅତିଗୁପ୍ତ କର୍ମ ।
ତୁମ୍ଭ ଆଗେ ସୁପ୍ରକାଶ ଯାର ଯେତେ ମର୍ମ । ୨ ।
ଯେତେ ମନ୍ଦ କଥା କହି ଅବା କର୍ମ କରୁ ।
ତୁମ୍ଭ ପାଞ୍ଜିରେ ହୁଅଇ ଲେଖା ଥାଉ ଥାଉ । ୩ ।
ବିଚାର ଦିନେ ମନୁଷ୍ୟ ଦୂତଗଣ ଆଗେ ।
ହୋଇବ ପ୍ରକାଶ ମୋର ଦୋଷ ସବୁ ବେଗେ । ୪ ।
ଆହେ ପ୍ରଭୁ ତୁମ୍ଭ ଗୋଡ ତଳେ ମୁହିଁ ପଡ଼ି ।
ଲଜ୍ଜାରେ ମୁହିଁ ପୋଡି କହୁଛି ହାତ ଯୋଡି । ୫ ।
କ୍ଷମା କର ମୋର ପାପ ଆହେ ଦୟାମୟ ।
ତୁମ୍ଭର ପାଞ୍ଜିରୁ ତାହା ନିଭାଇ ପକାଅ । ୬ ।
ମୋର ତ୍ରାଣକର୍ତ୍ତାଙ୍କର କ୍ରୁଶୀୟ ମରଣ ।
ଆହେ ପ୍ରଭୁ ତାହା ସବୁ କର ହେ ସ୍ମରଣ । ୭ ।
ସେହି ରକ୍ତେ ମୋର ପାପ ସବୁ କ୍ଷମା କର ।
ସେହି ରକ୍ତରେ ନିଭାଅ ସବୁ ଦୋଷ ମୋର । ୮ ।

ଧର୍ମଆତ୍ମା ଗୁଣେ ଦିଅ ମୋତେ ନୂଆ ମନ ।
ଯେପରି ମୁଁ ଧର୍ମ ବାଟେ କରିବ ଗମନ । ୯ ।
ଏହି ଦିନୁ ମୃତ୍ୟୁ ଯାଏ ସଦା ହୋଇ ଭୀତ ।
ମନ ଭାବେ ଏକ ପାପ ନ କରି ଯେମନ୍ତ । ୧୦ ।
ମହାପ୍ରଭୁ ଦୋଷ ସବୁ ଦେଖନ୍ତି ଶୁଣନ୍ତି ।
ମହା ବିଚାର ପର୍ଯ୍ୟନ୍ତ ତା ଲେଖି ରଖନ୍ତି । ୧୧ ।

୫୦ । (ପିତା ମାତାର ଆଜ୍ଞା ପାଳନ ।)

*L. M.*

ଶୁଣ ଅହେ ପିଲ୍ଲଗଣ ପ୍ରଭୁଙ୍କ ମହାବଚନ
ପିତାମାତାଙ୍କୁ ସର୍ବଦା କର ସମାଦର ପ୍ରେମ । ଘୋଷା ।

ଶିକ୍ଷକର କଥା ଶୁଣ ପିତାମାତା ଆଜ୍ଞା ମାନ ।
ଏପରି କର୍ମରେ ହୁଏ ପ୍ରଭୁଙ୍କର ତୁଷ୍ଟି ଜନ୍ମ । ୧ ।
ପିତାମାତା ସୁବଚନ ଯେ କରଇ ତା ଲଙ୍ଘନ ।
ଭୟାନକ ଦଣ୍ଡ ଅଛେ ତାର ପ୍ରତି ନିରୂପଣ । ୨ ।
ମହା ଅଧର୍ମ ପାପରେ ସେ ହୁଅଇ ଦୋଷୀ ସ୍ଥିରେ ।
ସେ ଅଟଇ ଶାପଗ୍ରସ୍ତ ପ୍ରଭୁଙ୍କ ସମ୍ମୁଖରେ ଜାଣ । ୩ ।
ପ୍ରଭୁଙ୍କୁ ଯେ ଭୟ କରେ ପିତାମାତା କଥା ପାଳେ ।
ଦୀର୍ଘାୟୁ ହୋଏ ଜଗତେ ପାଏ ଅନନ୍ତ ଜୀବନ । ୪ ।

[ମୁକୁନ୍ଦ ଦାସ ।

୫୧ । (ମିଥ୍ୟାବାଦୀ ବିଷୟ ।)

*C. M.*

ସତ୍ୟ ବାଟେ ପିଲ୍ଲମାନେ ଯେବେ ଚାଲି ଯାନ୍ତି ।
ସବୁ ଭଲ ଲୋକ ଦେଖି ମନେ ସୁଖ ପାନ୍ତି । ୧ ।
କେବଳ ସତ୍ୟ କହନ୍ତି ମିଥ୍ୟା ଡରି ମନେ ।
ସେମାନେ ବିଶ୍ୱାସପାତ୍ର ସମସ୍ତଙ୍କ ସ୍ଥାନେ । ୨ ।

ମିଥ୍ୟାବାଦୀଠାରେ କେବେ ପ୍ରତ୍ୟୟ ନ ଥାଏ ।
ଯେବେ ସତ୍ୟ କହେ ତେବେ ଅବିଶ୍ୱାସ ହୋଏ । ୩ ।
ଦୋଷ କରି ମିଥ୍ୟା ବଲେ ଯଦି ତା ଢାଙ୍କିବ ।
ଦୁଇଗୁଣ ଦୋଷ ତେବେ ତହିଁରୁ ଜନ୍ମିବ । ୪ ।
ହନାନୀୟ ଲୋଭବଲେ ମିଥ୍ୟା ଯେ କହିଲା ।
ଏଣୁ ସେହି ମହାପାପେ ବିନାଶ ହୋଇଲା । ୫ ।
ତାହାର ଭାର୍ଯ୍ୟା ସଫୀରା ମିଥ୍ୟା ସାକ୍ଷ୍ୟ ଦେଲା ।
ଏନିମନ୍ତେ ସ୍ୱାମୀତୁଲ୍ୟ ତାର ପ୍ରାଣ ଗଲା । ୬ ।
ସତ୍ୟବାଦୀଠାରେ ପ୍ରଭୁ ହୁଅନ୍ତି ସନ୍ତୋଷ ।
ମିଥ୍ୟାବାଦୀଠାରେ ସଦା ତାହାଙ୍କର ଦ୍ୱେଷ । ୭ ।
ସବୁ ମିଥ୍ୟାବାଦୀ ହେବେ ନରକେ ବିନାଶ ।
ନିଆଁ ଗନ୍ଧକ ହ୍ରଦରେ କାନ୍ଦିବେ ଅଶେଷ । ୮ ।
ଏଣୁ ମୋର ପାଟିକି ଜଗିବି ଭଲମତ ।
ନୋହିଲେ ଅବା ନରକେ ହେବ ମୋର ଗତ । ୯ ।
ପିଲାମାନେ ଯେତେ ମିଥ୍ୟା କଥା କହୁଥାନ୍ତି ।
ସେ ସବୁ ଈଶ୍ୱର ତାଙ୍କ ପାଞ୍ଜୀରେ ଲେଖନ୍ତି । ୧୦ ।

[ମୁକୁନ୍ଦ ଦାସ ।

---

୫୨ । (ବ୍ୟବସ୍ଥାର ସାର ।)

TUNE—*Auld Lang Syne.*

ସବୁ ବଲ ସବୁ ମନ ସବୁ ଜ୍ଞାନ ଦେଇ ।
ଈଶ୍ୱରଙ୍କୁ କର ପ୍ରେମ ସାର କଥା ଏହି । ୧ ।
ଆପଣା ସମାନ କର ପର ପ୍ରତି ପ୍ରେମ ।
ଏ ଦୁଇ ଆଜ୍ଞାରେ ସବୁ ଶାସ୍ତ୍ର ଭରି ଜାଣ । ୨ ।
ପରଠାରୁ ଯାହା ଲୋଡ଼ ପରକୁ ତା କର ।
ପରଠୁଁ ଯାହା ନ ଲୋଡ଼ ପରକୁ ନ କର । ୩ ।

[ମୁକୁନ୍ଦ ଦାସ ।

---

୪୬ ।

TUNE—*Hanover.*

ଖ୍ରୀଷ୍ଟରେ କେବଳ ତ୍ରାଣ ଉପାୟ ।
ଏଥିରେ ଦୁଃଖ ଯାଏ ମୃତ୍ୟୁ ଭୟ ।
ଆସ ଆସ ଟିଆ ହୋଇ ଅନାଥ ।
ଖ୍ରୀଷ୍ଟ ଦର୍ଶନେ ଆତ୍ମା ତ୍ରାଣ ପାଅ । ୧ ।

ତହିଁ ଅଶେଷ ପାପର ମୋଚନ ।
ତହିଁ ଆତ୍ମାର ଅନନ୍ତ ଜୀବନ ।
କିଣା ହେଲୁ ତା ପ୍ରଭୁଙ୍କ ରକ୍ତରେ ।
ରକ୍ତ ପ୍ରାୟଶ୍ଚିତ୍ତ କଲେ ଖ୍ରୀଷ୍ଟରେ । ୨ ।

ମୋତେ ସେ ଅପାର କରୁଣା କଲେ ।
ଦିନକୁଦିନ କୃପା ଦେଖାଇଲେ ।
ତେବେ ମୁଁ ତାଙ୍କୁ କିଛି ନ ମାନିଲି ।
କେବଳ ତାଙ୍କ ବିପକ୍ଷୀତ କଲି । ୩ ।

କେବଳ ମୁହିଁ ନୋହେ ସବୁ ଥିଲେ ।
ଜଗତଯାକ ଆଜ୍ଞାଦ୍ରୋହୀ ହେଲେ ।
ଗୋଟିଏ ନ ଥିଲୁ ନିଷ୍ପାପି ଜଣ ।
ପାପି ପାପ ପାଇଁ ଦେଲେ ଜୀବନ । ୪ ।

ଅଧିକ ପାପରୁ ଉଦ୍ଧାର କଲେ ।
ଅଧିକ ହୃଷ୍ଟଚିତ୍ତ ସେ ହୋଇଲେ ।
ନର ବଂଶକୁ ଯେତେ ତାଙ୍କ ପ୍ରେମ ।
ନର ବଂଶକୁ ତେତେକ ସମ୍ଭ୍ରମ । ୫ ।

ଧନ୍ୟ ଧନ୍ୟ ସର୍ବଦା ଧନ୍ୟ ଖ୍ରୀଷ୍ଟ ।
ତହିଁରୁ ମୋର ମନର ସନ୍ତୋଷ ।
ଅନନ୍ତ ଧନ୍ୟ ହେଉ ଯୀଶୁ ନାମେ ।
ମର୍ତ୍ତ୍ୟପୁରେ ଅଥବା ସ୍ୱର୍ଗ ଧାମେ । ୬ ।

[ମୁକୁନ୍ଦ ଦାସ ।

୫୪ । (ଖ୍ରୀଷ୍ଟଙ୍କ ପ୍ରଶଂସା ଗାନ ।)

*C. M.*

ହୋଶାନା ହେଉ ଦାଉଦ ସନ୍ତାନ ଯୀଶୁଙ୍କୁ ।
ସ୍ବର୍ଗପୁରୁଁ ଆସିଛନ୍ତି ଏ ମର୍ତ୍ତ୍ୟପୁରକୁ । ୧ ।
ଦେଖ ସେହି ଆସିଛନ୍ତି ସଙ୍ଗରେ ଘେନଣ ।
ପାପ କ୍ଷମା ଅନୁଗ୍ରହ ଅଉ ଶାନ୍ତି ଦାନ । ୨ ।
ପିଲ୍ଲ ଯୁବା ବୃଦ୍ଧଗଣ ଏକ ମେଳି ହୋଇ ।
ତାଙ୍କ ପାଦତଳେ ଥୁଅ ଜୟ ଭେଟି ନେଇ । ୩ ।
ସର୍ବୋପରସ୍ଥ ପ୍ରଭୁଙ୍କ ପ୍ରତି ହେଉ ଜୟ ।
ଯୁବାମେଷ ନାମେ ପରିତ୍ରାଣ ପାପକ୍ଷୟ । ୪ ।
ପୃଥିବୀ ପର୍ବତ ନଦୀ ସମୁଦ୍ର ଗଗନ ।
ତାଙ୍କ ମହାଶ୍ଚର୍ଯ୍ୟ ପ୍ରେମ କର ପ୍ରକାଶନ । ୫ ।
ତାହାଙ୍କ ମସ୍ତକେ କର ସମ୍ଭ୍ରମ ଅର୍ପଣ ।
ବୋଲ ଧନ୍ୟ ସର୍ବ ପ୍ରାଣୀ ବୋଲ ସଦା ଧନ୍ୟ । ୬ ।

[ମୁକୁନ୍ଦ ଦାସ ।

---

୫୫ । (ଖ୍ରୀଷ୍ଟଙ୍କୁ ସର୍ବ ପ୍ରାଣିଙ୍କର ପ୍ରଶଂସା ।)

*C, M.*

ଆକାଶ ତଳ ନିବାସି ସର୍ବ ପ୍ରାଣିଗଣ ।
କର ସୃଷ୍ଟିକର୍ତ୍ତାଙ୍କର ପ୍ରଶଂସା ଗାୟନ । ୧ ।
ତ୍ରାଣକର୍ତ୍ତାଙ୍କର ନାମ ଜୟଗାନ ହେଉ ।
ପ୍ରତ୍ୟେକ ଦେଶରେ ପ୍ରତି ଜିହ୍ବା ଜୟ ଗାଉ । ୨ ।
ଅନନ୍ତ ଦୟା ତୁମ୍ଭର ଅଟଇ ଈଶ୍ବର ।
ଅନନ୍ତ ସତ୍ୟ ଅଟଇ ଶ୍ରୀନାମ ତୁମ୍ଭର । ୩ ।
ତୁମ୍ଭ ସ୍ତୁତି ସର୍ବଦେଶ ବ୍ୟାପୁ ହେ ସତ୍ବର ।
ତୁମ୍ଭ ନାମେ ଜୟଧ୍ବନି ହେଉ ନିରନ୍ତର । ୪ ।

[ମୁକୁନ୍ଦ ଦାସ ।

୫୬ ।   (ଐଶ୍ୱରିକ ରାଜ୍ୟର ପ୍ରାର୍ଥନା ।)

ବଢ଼ୁ ପ୍ରଭୁ ଧର୍ମ ସତ୍ୟ ପୃଥ୍ୱୀ ସମୁଦାୟ
ସର୍ବେ ବୋଲୁ ଜୟ
ଶୟତାନ ଗର୍ବ ଖର୍ବ କର ଦୟାମୟ । ଘୋଷା ।

ଯେତେ ମନୁଷ୍ୟ କଳ୍ପିତ   ସର୍ବ ଶାସ୍ତ୍ର ହେଉ ଲୋପ
ହେଉ ସବୁ ଭୂମିଗତ   ଯେତେ ଦେବାଳୟ । ୧ ।

ପ୍ରତି ଜିହ୍ୱା ଖ୍ରୀଷ୍ଟ ନାମ   ସ୍ୱୀକାର କରୁ ବହନ
ପ୍ରଭୁ ଯୀଶୁ ବିରାଜ ହେ   ସକଳ ହୃଦୟ । ୨ ।

ନିବିଡ଼ ଅନ୍ଧକାରରେ   ମରଣ ଛାୟା ସ୍ଥଳରେ
ହେ ଧର୍ମ ତପନ ଖ୍ରୀଷ୍ଟ   ହେଉନ୍ତୁ ଉଦୟ । ୩ ।

ଯହିଁ ଯେତେ ଅଛି ଗ୍ରାମ   ସର୍ବଠାରେ ଯୀଶୁ ନାମ
ସର୍ବେ ବୋଲୁ ଦେଇ ମାନ୍ୟ   ଜୟ ଯୀଶୁ ଜୟ । ୪ ।

[କାର୍ତ୍ତିକ ସାମଲ ।]

---

୫୭ ।   TUNE—*Golden Shore.*

ସଂସାରର ସୁଖ ଦୁଃଖ   କେହି ଚିର ନୁହଇ
ସ୍ୱପନ ସମାନ ସବୁ   କ୍ଷଣକାଳ ଅଟଇ ।

*Chorus.*—ଭାବନା ଏତେ କିପାଇ   ମନେ ପଡ଼ଇ କି ନାହିଁ
ଏ ଦୁଃଖ ରହିବ ନାହିଁ   ବେଗେ ଯିବ ପଳାଇ
ଏ ଦୁଃଖ ରହିବ ନାହିଁ   ବେଗେ ଯିବ ପଳାଇ । ୧ ।

ଅନ୍ଧାର ଅନ୍ତେ ଆଲୁଅ   ସୃଷ୍ଟିର ରୀତି ଏହି
ଦୁଃଖ ଅନ୍ତେ ସେହି ମତେ   ସୁଖ ମଧ୍ୟ ଆସଇ । ୨ ।

ଅକଥ୍ୟ ସ୍ୱର୍ଗୀୟ ସୁଖ   ଅଛି ସଞ୍ଚିତ ହୋଇ
ବିଳମ୍ବ ନୁହଇ ଜାଣ   ତାହା ଭୋଗିବା ପାଇଁ । ୩ ।

ଏଣୁ ଏ କ୍ଷଣିକ ଦୁଃଖ   ସହ ବିମୁଖ ନୋହି
ଦେଖ ଆସୁଅଛି ଦୁଃଖ   ଶେଷ ଦିନ ଘନାଇ । ୪ ।

[ଶେମ ସାହୁ ।]

---

୪୮ । TUNE—*Daniel's Band.*

ସାଧୁଙ୍କ ଅଧିକାର
ଅଟେ ଅପାର ।
କଏ ଅଛୁ ଏ ମଣ୍ଡଳେ ।
ତାଙ୍କ ପଦରେ

*Cho.*—ଆସ ବହୁଜନରେ ସାଧୁ ସଙ୍ଗରେ
ଚାଲିବା ଧର୍ମ ପଥରେ ବାଲ୍ୟ କାଳରେ । ୧ ।

ସୈନ୍ୟାଧ୍ୟକ୍ଷ ଈଶ୍ୱର
ପକ୍ଷ ତାଙ୍କର ।
ରଖନ୍ତି ବାହୁ ବଳରେ
ସେ କୁଶଳରେ । ୨ ।

ଯେତେକ ମୂଲ୍ୟବାନ
ପ୍ରତିଜ୍ଞାମାନ ।
ଉକ୍ତ ତାଙ୍କ ନିମିତ୍ତରେ
ଧର୍ମଗ୍ରନ୍ଥରେ । ୩ ।

ତେଜ କି ସାଧୁସଙ୍ଗ
ହେବା କୁସଙ୍ଗ ।
ରହିବା ନାହିଁ ସୁଖରେ
ମଜ୍ଜି ଦୁଃଖରେ । ୪ ।

ଥାଉଁ ସତ୍ରେ ସ୍କୁଲରେ
ଆସ ଶୀଘ୍ରରେ ।
ଚାଲିବା ସାଧୁ ସଙ୍ଗରେ
ବାଲ୍ୟ କାଳରେ । ୫ ।

ଇହ ପର ସକଳ
ସୁଖ ମଙ୍ଗଳ ।
ଭାଗି ହେବା ସେ ସବରେ
ତାଙ୍କ ସଙ୍ଗରେ । ୬ ।

[ଶେଷ ସାନ୍ତ୍ର ।

୬୯ ।    (ବିଚାର ଦିନ ବିଷୟ ।)

*Oh there will be Mourning!*

ହାଁ ତହିଁକି ଶୋକ, ଶୋକ, ଶୋକ, ଶୋକ ।
ହାଁ ତହିଁକି ଶୋକ ବିଚାରର ଦିନେ ଯେ । ଘୋଷା ।

ପିତା ପୁତ୍ର ବିଭିନ୍ନ ମାତା କନ୍ୟା ବିଭିନ୍ନ ।
ସର୍ବଦା ବିଭିନ୍ନ । ୧ ।

ସ୍ୱାମୀ ଭାର୍ଯ୍ୟା ବିଭିନ୍ନ ପ୍ରିୟ ପ୍ରିୟା ବିଭିନ୍ନ ।
ସର୍ବଦା ବିଭିନ୍ନ । ୨ ।

ଭାଇ ଭଉଣୀ ବିଭିନ୍ନ ନାତି ଜ୍ଞାତି ବିଭିନ୍ନ ।
ସର୍ବଦା ବିଭିନ୍ନ । ୩ ।

ପଲ ପାଳକ ଭିନ୍ନ ଶିଷ୍ୟ ଶିକ୍ଷକ ଭିନ୍ନ ।
ସର୍ବଦା ବିଭିନ୍ନ । ୪ ।

ସାଧୁ ଦୁଷ୍ଟ ବିଭିନ୍ନ ଦୂତ ଭୂତ ବିଭିନ୍ନ ।
ସର୍ବଦା ବିଭିନ୍ନ । ୫

ଶୟତାନ ପାପିଗଣ ପ୍ରଭୁଠୁଁ ସବୁ ଭିନ୍ନ ।
ସର୍ବଦା ବିଭିନ୍ନ । ୬ ।

ସାଧୁ ଆତ୍ମା ଦୂତଗଣ ସ୍ୱର୍ଗେ ଯିବେ ହୃଷ୍ଟମନ ।
ସଦା ସଙ୍ଗ ହେବେ । ୭ ।

ହାଁ ସେଥିକି ଜୟ ଜୟ ଜୟ ଜୟ ।
ହାଁ ସେଥିକି ଜୟ ବିଚାରର ଦିନ ଯେ ।

[ଏ. ସ୍ତୈନ ।

---

(ଖ୍ରୀଷ୍ଟଙ୍କ ରାଜ୍ୟ ବୃଦ୍ଧି ପ୍ରାର୍ଥନା ।)

୭୦ ।    ଧନ୍ୟ ଧନ୍ୟ ସଦା ଧନ୍ୟ ହେଉନ୍ତୁ ଯୀଶୁ ରାଜା ।
ସର୍ବ ଜଗତ କରନ୍ତୁ ତାଙ୍କ ଶ୍ରୀ ପାଦ ପୂଜା । ଘୋଷା ।

ତାଙ୍କ ରାଜ୍ୟ ସବଳେ ବ୍ୟାପୁ ସର୍ବ ଅଞ୍ଚଳେ ।
ବିନାଶ ହେଉ ବିହନ ପାପାନ୍ଧକାର ରାଜା । ୧ ।

ତାଙ୍କ ଶତ୍ରୁ ସମସ୍ତ ହେଉନ୍ତୁ ପରାଜିତ ।
ସ୍ଥାନ ଛେଡ଼ି ପଳାଉନ୍ତୁ ସର୍ବେ ପାଇଣ ଲଜ୍ଜା । ୨ ।
ଯେତେକ ମିଥ୍ୟାମତ ସମୂଳେ ହେଉ ଲୁପ୍ତ ।
ବାଜୁ ସର୍ବ କର୍ଣ୍ଣେ ତାଙ୍କ ସୁସମାଚାର ବାଜା । ୩ ।
ତାଙ୍କ ପରମ ନାମ ହେଉ ଜଗତେ ଗାନ ।
ଦେଉନ୍ତୁ ପ୍ରଶଂସା ବଳି ସକଳ ରାଜା ପ୍ରଜା । ୪ ।

[ଶେମ ସାହୁ ।

---

(ସ୍ୱର୍ଗରେ ପିଲ୍ଲମାନଙ୍କର ସୁଖ ।)

୬୯ । ଅହା କି ସୁଖରେ ସାନ ପିଲ୍ଲଗଣ ।
ସ୍ୱର୍ଗପୁରେ କରନ୍ତି କାଳ କ୍ଷେପଣ । ଘୋଷା ।

ପ୍ରଭୁଙ୍କର ସିଂହାସନ ଗୃହ ପାଖରେ ।
ଠିଆ ହୋଇଛନ୍ତି ସେମାନେ କି ହୃଷ୍ଟରେ
ପାପ ଯେତେ ତାଙ୍କର    ସବୁ ହୋଇଛି ଦୂର
ଶୋକ ଦୁଃଖ କ୍ରନ୍ଦନ    ଆଉ ନ ଥାଏ ପୁଣ
ଏଣୁ ଆନନ୍ଦେ ପୂର୍ଣ୍ଣ    ହୋଇ କରନ୍ତି ଗାନ
ଜୟ ଜୟ ଜୟ ଅନୁକ୍ଷଣ । ୧ ।
ଥିଲେ ସେହିମାନେ ଥରେ ଭୂମି ପରରେ
ସାନ ପିଲ୍ଲ ହୋଇ ଏ ଅନିତ୍ୟ ସଂସାରେ
ତେତେବେଳେ ସେମାନେ    ଏମନ୍ତ ହୃଷ୍ଟ ମନେ
ଯୀଶୁ ପ୍ରଶଂସା ଗାନ    ନ କରିଲେ ପ୍ରମାଣ
ମାଏ ଏବେ କେମନ୍ତ    ଦେଖ ସୁନ୍ଦର ମତ
କରନ୍ତି ଜୟ ଜୟ ଗାୟନ । ୨ ।
କହ ଏହି ପିଲ୍ଲମାନେ କେଉଁ ପଥରେ
ପ୍ରବେଶ ହୋଇଅଛନ୍ତି ସ୍ୱର୍ଗ ପୁରରେ ?

ଯହିଁ ନାହିଁ ବିଳାପ   ନାହିଁ ମୃତ୍ୟୁ ସନ୍ତାପ
ନାହିଁ ଶୋକ କ୍ରନ୍ଦନ   ପୂର୍ଣ୍ଣ ଆନନ୍ଦ ସ୍ଥାନ
କପଟରେ ସେମାନେ   ଆସି ଏମନ୍ତ ସ୍ଥାନେ
କରନ୍ତି ଜୟ ଜୟ ଗାୟନ । ୩ ।
ଯେଣୁ ତ୍ରାଣକର୍ତ୍ତା ସେମାନଙ୍କ ହେତୁରେ
ନିଜ ରକ୍ତପାତ କଲେ କ୍ରୁଶ ଉପରେ
ସେ ରକ୍ତେ ହୋଇ ଧୌତ   ହେବାରୁ ପରିଷ୍କୃତ
ଏବେ ସେ ପିଲାଗଣ   ପିନ୍ଧି ଶୁକ୍ଳ ବସନ
ଗାଆନ୍ତି ସ୍ୱର୍ଗପୁରେ   ଅତି ମଧୁର ସ୍ୱରେ
ଜୟ ଜୟ ଜୟ ଅନୁକ୍ଷଣ । ୪ ।
ଲୋଡ଼ି ଯୀଶୁଙ୍କ କରୁଣା ବାଲ୍ୟକାଳରେ
କଲେ ତାଙ୍କୁ ପ୍ରେମ ଥାଇ ଏହି ସଂସାରେ
ଏଣୁ ଏବେ ସେମାନେ   ସେ ଅମର ଭୁବନେ
ଯୂବାମେଷ ସ୍ମୁଖରେ   ଠିଆ ହୋଇ ହୃଷ୍ଟରେ
ଦେଖି ତାଙ୍କ ବଦନ   ହୃଷ୍ଟେ କରନ୍ତି ଗାନ
ଜୟ ଜୟ ଜୟ ଅନୁକ୍ଷଣ । ୫ ।

[ଶେମ ସାହୁ ।

(ଯୌବନ ସମୟ ।)

TUNE—*Our hearts are young &c.*

୬୨ କି ଆନନ୍ଦ ସମୟ   ଯଉବନ ଦିନ ।
ସକଳ ସୁଖମୟ   ଭାବନା ବିହୀନ ।
ଜଗତ କି ସୁନ୍ଦର   ଦିଶଇ ଦୃଷ୍ଟିକି ।
କାମନା ଯେ ମନର   ବଳଇ ତହିଁକି । ୧ ।

କି ସୁନ୍ଦରରୂପରେ   ଦିଶେ ସକଳରେ ।
ପ୍ରଭୁ ପ୍ରେମ ବଟିବ   ଆମ୍ଭର ନିମିତ୍ତ ।

F

ନ କରିବା କି ପ୍ରେମ ତାଙ୍କୁ ଦେଇ ମନ ?
ଅସ କରିବା ପ୍ରେମ ଦେଇ ସବୁ ମନ୍ । ୨ ॥

କରୁପେ ପ୍ରେମ ତାଙ୍କୁ ପାର କରିବାକୁ ।
ନ ହୋଇଲେ ପବିଏ ଏ ପତିତ ଚିତ୍ତ ?
ଖ୍ରୀଷ୍ଟ ରକ୍ତ ପବିଏ ଧୁଅଇ ଦୁରିତ ।
ସେ ରକ୍ତେ ହେଲେ ଧୌତ ହେବା ପରିଷ୍କୃତ । ୩ ॥

ଏହି କାର୍ଯ୍ୟ ମହାନ ହେଲେ ସମାଧାନ ।
ଆନନ୍ଦେ ହେବ ପୂର୍ଣ୍ଣ ସେ ସ୍ୱର୍ଗ ଭୁବନ ।
ଫେରିଲେ ପାପୀ ଜଣେ ଦିବ୍ୟ ଦୂତଗଣେ ।
କରନ୍ତୁ ଆନନ୍ଦରେ ଉତ୍ସବ ସ୍ୱର୍ଗରେ । ୪ ॥

ଥାଉଁ ବାଲ୍ୟ ସମୟ କରିବା କି ନାହିଁ ।
ଅତି ଆନନ୍ଦମୟ କର୍ମଟି ଯେ ଏହି ?
କର ପ୍ରଭୁ କଲ୍ୟାଣ ଅମ୍ଭେ ପିଲାଗଣ ।
ହୋଇବା ହେ ଯେସନ ତୁମ୍ଭ ଶିଷ୍ୟଗଣ । ୫ ॥

ପକ୍ୱ କେଶ ପର୍ଯ୍ୟନ୍ତେ ବଞ୍ଚିଲେ ଜଗତେ ।
ଅଥବା ବାଲ୍ୟକାଳେ ମରଣ ଆସିଲେ ।
ଆଉଜି ଯୀଶୁ କୋଳେ ରହିବା କୁଶଳେ ।
ତହୁଁ ତାଙ୍କ ଗୌରବେ ଭାଗି ହେବା ସ୍ୱର୍ଗେ । ୬ ॥

[ଶେମ ସାହୁ ।

---

(ମଙ୍ଗଳଦାନ ସ୍ମରଣ )

୭୩ । TUNE—*Hold the Fort.*

ସ୍ୱର୍ଗ ସୁଖ ତେଜି ଅମ୍ଭମାନଙ୍କ ପାଇଁ,
ଜଗତକୁ ଆସିଥିଲେ ସ୍ନେହ ଉହ୍ଲାଇ । ୧ ।

*Chorus.*—ଅସ ଅନନ୍ଦେ ଗାଇବା ହେ ପିଲାମାନେ
ଧନ୍ୟବାଦ ଗୀତ ପ୍ରଭୁ ଯୀଶୁଙ୍କ ନାମେ ।

ପାପ ନରକରୁ କରିବାକୁ ଉଦ୍ଧାର,
ପ୍ରେମେ ଦେଇଥିଲେ ସେ ପ୍ରାଣ ଆପଣାର । ୨ ।

ମୃତ୍ୟୁ ଜୟ କରି ସେ ସ୍ୱର୍ଗରେ ଅଛନ୍ତି,
ତେବେହେଁ ପିଲାମାନଙ୍କୁ ଭୁଲି ନାହାନ୍ତି । ୩ ।

ଜଗତରେ ଥିବାବେଳେ ଥିଲା ଯେପରି,
ପିଲାଙ୍କର ପ୍ରତି ପ୍ରେମ ଅଛି ସେପରି । ୪ ।

କେତେ ଦିବ୍ୟ ଅଧିକାର ତାଙ୍କ ଦୟାରୁ,
କୁଶଳରେ ଭୋଗୁଅଛୁଁ ବାଲ୍ୟକାଳରୁ । ୫ ।

ଖ୍ରୀଷ୍ଟିୟାନ ପିତାମାତାଙ୍କର କୋଳରେ,
ବଢ଼ୁଅଛୁଁ, କି ସୌଭାଗ୍ୟ ! ବୁଝ ମନରେ । ୬ ।

ଧର୍ମ ଶିକ୍ଷା ମିଳୁଛି ଶାବତ ସ୍କୁଲରେ,
ଧର୍ମଶାସ୍ତ୍ର ପାଉଅଛୁଁ ବିନା ମୂଲ୍ୟରେ । ୭ ।

କୁଶଳରେ କଟାଇ ସେ ଗତ ବରଷ,
ଦେଖାଇଅଛନ୍ତି ଏ ବାର୍ଷିକ ଦିବସ । ୮ ।

ନୁହଇ କି ଉଚିତ ଦେବା ପ୍ରତିଦାନ,
କରିଅଛନ୍ତି ଯେ ଏତେ ମଙ୍ଗଳଦାନ ? । ୯ ।

ଏଣୁ ଗାଇବା ନିତ ତାଙ୍କ ଗୁଣ ସ୍ତୁତି,
ବାଲ୍ୟକାଳରୁ କରି ତାଙ୍କୁ ପ୍ରେମ ଭକ୍ତି । ୧୦ ।

---

[ଶେମ ଧାତୁ ।

(ବାଳକବାଳିକାମାନଙ୍କ ପ୍ରଶଂସା ଗାନ ।)

୬୪ । TUNE—*Children of Jerusalem.*

1. ପୂର୍ବକାଳରେ ଥରେ, ସେ ଯିରୁଶାଲମରେ,
ଗାଇଲେ ପିଲାମାନେ, ପ୍ରଶଂସା ଯୀଶୁ ନାମେ,
ବୋଇଲେ ଜୟ ଶ୍ରୀ ଯୀଶୁଙ୍କୁ,
ଦାଉଦ ସନ୍ତାନ ଯୀଶୁଙ୍କୁ,
ଜୟ ଯୀଶୁ, ଜୟ ଯୀଶୁ, ଜୟ ଯୀଶୁ ରାଜାଙ୍କୁ ।

2 ଆସ ଗାଇ ସୁସ୍ୱରେ, ମିଶି ତାଙ୍କ ସଙ୍ଗରେ,
ହେ ସଙ୍ଗି ପିଲାମାନେ, ଅତ ଆନନ୍ଦମନେ,
ବୋଲ ହେ, ଜୟ ଶ୍ରୀ ଯୀଶୁଙ୍କୁ,
ଦାଉଦ ସନ୍ତାନ ଯୀଶୁଙ୍କୁ,
ଜୟ ଯୀଶୁ, ଜୟ ଯୀଶୁ, ଜୟ ଯୀଶୁ ରାଜାଙ୍କୁ ।

3. ଦୂତମାନେ ସ୍ୱର୍ଗରେ, ସାଧୁମାନେ ପୃଥ୍ୱୀରେ,
ଗାଆନ୍ତୁ ହୃଷ୍ଟଚିତ୍ତେ, ଯୀଶୁ ପ୍ରଶଂସା କରେଥ୍ୟ,
ବୋଲ ହେ, ଜୟ ଶ୍ରୀ ଯୀଶୁଙ୍କୁ,
ଦାଉଦ ସନ୍ତାନ ଯୀଶୁଙ୍କୁ,
ଜୟ ଯୀଶୁ, ଜୟ ଯୀଶୁ, ଜୟ ଯୀଶୁ ରାଜାଙ୍କୁ ।

4. କେତେ ବୋଧ ଅଗମ୍ୟ, ଅଟଇ ତାଙ୍କ ପ୍ରେମ,
କଲେ ସେ ପ୍ରାଣଦାନ, ତୁମ୍ଭ ଆମ୍ଭ କାରଣ,
ବୋଲ ହେ, ଜୟ ଶ୍ରୀ ଯୀଶୁଙ୍କୁ,
ଦାଉଦ ସନ୍ତାନ ଯୀଶୁଙ୍କୁ,
ଜୟ ଯୀଶୁ, ଜୟ ଯୀଶୁ, ଜୟ ଯୀଶୁ ରାଜାଙ୍କୁ ।

5. ଆଜ ଉଲ୍ଲବଦନ, କେତେ ଆନନ୍ଦ ମନ,
ଅସ ଗାଇ ସୁସ୍ୱରେ, ଯୀଶୁ ନାମେ ଉଚ୍ଚରେ,
ବୋଲ ହେ, ଜୟ ଶ୍ରୀ ଯୀଶୁଙ୍କୁ,
ଦାଉଦ ସନ୍ତାନ ଯୀଶୁଙ୍କୁ,
ଜୟ ଯୀଶୁ, ଜୟ ଯୀଶୁ, ଜୟ ଯୀଶୁ ରାଜାଙ୍କୁ ।

[ଶେମ ସାହୁ ।

---

*Temperance Hymn.*

୬୫ । ନିଶାଦ୍ରବ୍ୟ ଦ୍ୱାରା ଦେଖ ଘଟେ ନାନା ରୋଗ କ୍ଲେଶ ।
କ୍ରମଶେ ଅଭ୍ୟାସ କଲେ ହୁଏ ତାର ସର୍ବନାଶ । ଘୋଷା ।

ଅଫୀମ ମଦ୍ୟ ଗଞ୍ଜାଇ ମଦତ ଚରସ ଖାଇ ।
କେତେ ଯୁବା ବନ୍ଧୁଗଣ ହେଉଅଛନ୍ତି ବିନାଶ । ୧ ।

ମଦ୍ୟପାନ ହେତୁ କେତେ ଯୌବନେ ମରନ୍ତି ଲୋକେ ।
ନିଶାରୂପ ସର୍ପାଘାତେ ଦେହ ଆତ୍ମା ଦୁଇ ନାଶ । ୨ ।

ଦେଖ ବନ୍ଧୁ ଜଗତରେ ନିଶା ସର୍ପ ଆଘାତରେ ।
କେତେ ଜ୍ଞାନୀ ବିଜ୍ଞ ଜନେ ତାହା ଦ୍ୱାରା ହେଲେ ନାଶ । ୩ ।

କେତେ କେତେ ପରିବାର ହୁଅନ୍ତି ଅତି ବ୍ୟାକୁଳ ।
ଅନ୍ନବସ୍ତ୍ର ଅଭାବରେ ପାଉଥାନ୍ତି ବହୁ କ୍ଳେଶ । ୪ ।

ଶୁଣ ଯୁବା ବନ୍ଧୁଗଣ ବେଗେ ହୁଅ ସଚେତନ ।
ପରମାୟୁ ଥାଉଁ ଥାଉଁ କିଆଁ ହେବ ଅଳ୍ପାୟୁଷ । ୫ ।

ଈଶ୍ୱରଙ୍କୁ କର ଭୟ ସର୍ବ ପାପ ହେବ ଜୟ ।
ପରିତ୍ରାଣ କର୍ତ୍ତା ଯୀଶୁ ଚରଣେ ଚିତ୍ତ ନିବେଶ । ୬ ।

---

(ସ୍ୱର୍ଗ ବିଷୟ ।)

୬୭ । TUNE—*Home, Home, Sweet Home.*

1. ପାପ ପରୀକ୍ଷା ନାହିଁ ସେହିଠାରେ,
ଶତ୍ରୁ ତାନହିଁ ପ୍ରବେଶି ନ ପାରେ,
ମନ୍ଦ ଭାବନା କୌଣସି ପ୍ରକାରେ
ଜନ୍ମିବ ନାହିଁ କେବେହେଁ ମନରେ ।

*Cho.* ସ୍ୱର୍ଗୀୟ ଧାମ
କି ରମ୍ୟ ସ୍ଥାନ ନାହିଁ ତା ସମାନ ।

2. ଯେତେ ରୋଗ ବ୍ୟାଧି ଏ ଜଗତରେ
କ୍ଳେଶ ଦିଅନ୍ତି ନାନା ସମୟରେ,
ଦେଖା ନୋହିବେ ଆଉ ସେହିଠାରେ,
ମୃତ୍ୟୁହିଁ ଶୁଣା ନୋହିବ କର୍ଣ୍ଣରେ ।

3. ଯେଉଁ ଯୀଶୁ ଜଗତେ ଥିବାବେଳେ
ପିଲାଙ୍କୁ ନିକଟକୁ ଡାକିଥିଲେ,

ସେହି ବସି ତହିଁ ସିଂହାସନରେ
କରୁଅଛନ୍ତି ରାଜ୍ୟ ଗୌରବରେ ।

4. ଥାଇ ଜଗତେ ଯେଉଁ ପିଲାମାନେ
ଯୀଶୁଙ୍କୁ ପ୍ରେମ କରିଥିଲେ ମନେ,
ଏବେ ତାଙ୍କ ଶ୍ରୀଛାମୁରେ ସେମାନେ
ଗାଉଅଛନ୍ତି ଅତି ହୃଷ୍ଟ ମନେ ।

5. କୋଟି୨ ସାଧୁ ଦୂତ ସଙ୍ଗତେ
ବାସ କରନ୍ତି ସେମାନେ ନିରତେ,
ନିତ୍ୟ ଆନନ୍ଦ ତାଙ୍କର ଭୂଷଣ,
ଅଜଣା ତାଙ୍କୁ ଶୋକ କି କ୍ରନ୍ଦନ ।

6. ମାଗୁଅଛୁଁ ପ୍ରଭୁ ଶ୍ରୀଚରଣରେ,
କର ଏ କଲ୍ୟାଣ ବାଲ୍ୟକାଳରେ,
ଆଜଠାରୁ ଗୃହି ଧର୍ମ ପଥରେ
ଶେଷ ପହୁଞ୍ଚିବା ଯେହ୍ନେ ସ୍ୱର୍ଗରେ ।

[ଶେମ ସାହୁ ।

(ସ୍ୱର୍ଗରେ ପୁନର୍ବାର ଭେଟାଭେଟି ହେବା ।)

୬୭ । TUNE—*Shall we gather at the river?*

୧ ସ୍ୱର୍ଗୀୟ ସିଂହାସନରୁ, ନିର୍ଗତ ନଦୀତୀରେ ।
ଭେଣ୍ଟ ହେବା କି ସମସ୍ତେ, ଏକତ୍ର ସେଠାବରେ ।

*Chorus.*—ହଁ ମିଳିବା ସବୁ ଶେଷେ
ମେଷଶାବକ ସିଂହାସନ ପାଶେ
ସାଧୁମାନଙ୍କ ସହବାସେ
ସେ ରମ୍ୟ ନଦୀ ପାଶେ ।

୨ ତେଜସ୍ୱୀ ଦୂତ ସେଠାରେ, ପାଦ ଅର୍ପଣ କରେ ।
ଜଳ ତାର ସୁନିର୍ମଳ, ବହଇ ନିରନ୍ତରେ ।

୩ ରୌପ୍ୟମୟ ଫେନ ପୁଞ୍ଜ, ଏଡାଇ ନଦୀତଟରେ ।
ବୁଲିବା ଭଜିବା ଯାଇ, ସିଂହାସନ କଡରେ ।

୪ ତ୍ରାଣକର୍ତ୍ତାଙ୍କର ମୁଖ, ନିତ୍ୟ ଅବଲୋକନେ ।
ଗାଇବେ ଅନନ୍ତକାଳ, ଆନନ୍ଦେ ସାଧୁମାନେ ।

୫ ନୋହିବା ଯାଏ ପ୍ରବେଶ, ସେ ନଦୀ ନିକଟରେ ।
ହୋଇବା ସୁସ୍ଥିର ଚିତ୍ତ, ଅଟଳ ଭରସାରେ ।

[ଶେମ ସାହୁ ।

---

(ପିଲାମାନଙ୍କର ସୌଭାଗ୍ୟ ।)

୭୮ । TUNE—*Ther's a Friend for little Children.*

୧ ପିଲାଙ୍କର ବନ୍ଧୁ ଜଣେ
ଅଛନ୍ତି ସ୍ୱର୍ଗରେ,
ବନ୍ଧୁ ତାଙ୍କ ସମାନେ
ନାହିଁ ସଂସାରରେ ;
ପ୍ରେମ ଥାଏ ତାଙ୍କର
ସମାନ ଉପରେ,
ନୁହଇ ତା ବିକାର
କୌଣସି କାଳରେ ।

୨ ପିଲାଙ୍କ ପାଇଁ ବିଶ୍ରାମ
ଅଛି ସ୍ୱର୍ଗପୁରେ,
ଅତୁଲ୍ୟ ସେ ବିଶ୍ରାମ
ନାହିଁ ତା ପଟରେ ;
ଖ୍ରୀଷ୍ଟଙ୍କ ପ୍ରତି ପ୍ରେମ
ଥାଏ ଯା ମନରେ,
ସେ ପିଲା ସେ ବିଶ୍ରାମ
ଭୋଗିବ ସ୍ୱର୍ଗରେ ।

୩ ପିଲାଙ୍କର ପାଇଁ ଗୃହ
ଅଛି ସ୍ୱର୍ଗପୁରେ,
କି ସୁରମ୍ୟ ସେ ଗୃହ !
କାହିଁ ତା ପଟରେ ?
ପିଲାମାନେ ସେଠାରେ
ଖ୍ରୀଷ୍ଟଙ୍କ ସଙ୍ଗରେ,
ରହିବେ ଏକଏରେ
ଅନନ୍ତ ସୁଖରେ ।

୪ ପିଲାଙ୍କ ପାଇଁ ମୁକୁଟ
ଅଛି ସ୍ୱର୍ଗପୁରେ,
ସେତ ଗୌରବଯୁକ୍ତ
ଅତୁଲ୍ୟ ସଂସାରେ !
ଯୀଶୁଙ୍କୁ ପ୍ରେମକାରୀ
ଯେଉଁ ପିଲାମାନେ,
ହେବେ ତା ଅଧିକାରୀ
ମହା ଆନନ୍ଦରେ ।

୫ ସେ ସ୍ୱର୍ଗକୁ ଯିବା ପାଇଁ
ଆସ ପିଲାମାନେ,
ଯତ୍ନ କରିବା ପାଇଁ
ଶାବତ ସ୍କୁଲରେ ;
ଯୀଶୁ ସ୍ୱର୍ଗର ଦ୍ୱାର
ତାଙ୍କ ଦେଇ ଗଲେ,
ପହୁଞ୍ଚି ଜୟକାର
କରିବା ସ୍ୱର୍ଗରେ ।

[ଶେମ ସାଙ୍କି ]

## ୨୯ । *Temperance Hymn.*

ହେ ପ୍ରିୟ ଯୁବାଗଣ, ବେଗେ ହୁଅ ସଚେତନ
ସଦୁପଦେଶ ବଚନ, ନ କର ହେ ହେୟଜ୍ଞାନ ॥ ଘୋଷା ॥

କ୍ରମେ ମାଦକ ସେବନ, ଅଭ୍ୟସ୍ତ ହେଲେ ଜାଣ ।
ହୋଇଲେହେଁ ଧନବାନ, ନାଶ କରେ ଧନ ମାନ । ୧ ।

ଅତ୍ୟନ୍ତ ନିଶା ସେବନ, ଲୋପ କରେ ବୁଦ୍ଧି ଜ୍ଞାନ ।
କରେ ପଶୁର ସମାନ, ନାଶ କରେ ଦେହ ପ୍ରାଣ । ୨ ।

ଏସନ ଆଶକ୍ତ ଜନ, ହରଏ ତାର ସମ୍ମାନ ।
ନ କରନ୍ତି ସମ୍ଭାଷଣ, ତା ସଙ୍ଗରେ ସଭ୍ୟଜନ । ୩ ।

ହୋଇଣ ସ୍ୱାସ୍ଥ୍ୟରେ କ୍ଷୀଣ, କ୍ଳେଶ ପାଏ ଦିନେଦିନ ।
ତା ବହୁମୂଲ୍ୟ ଜୀବନ, ଶୀଘ୍ରେ ମୃତ୍ୟୁରେ ପତନ । ୪ ।

ଧର୍ମପୁସ୍ତକ ବଚନ, ଏ ବିଷୟେ ଯେ ଲେଖନ ।
ଶୁଣ ଦେଇ ସ୍ଥିରମନ, ନ ପାସୋର କଦାଚନ । ୫ ।

ମଦର ରଙ୍ଗିମା ବର୍ଣ୍ଣ, ଦିଶିଲେହେଁ ତେଜବାନ ।
ନ କର ଦୃଷ୍ଟି ପତନ, ଅଟେ ସେ ସର୍ପ ସମାନ । ୬ ।

ଦଂଶିବ ତୁମ୍ଭର ପ୍ରାଣ, ଏ ଅଟେ ଧ୍ରୁବ ବଚନ ।
ତାହାର ଯେଉଁ ଦଂଶନ, ନାଶିବ ଧନ ଜୀବନ । ୭ ।

ଗଞ୍ଜାଇ ଓ ଅହିଫେନ, ମଦତ ଆଦିକୁ ଜାଣ ।
କରିଲେ ନିତ୍ୟ ସେବନ, ହୋଇବ ଦୁର୍ଦ୍ଦଶାପନ୍ନ । ୮ ।

ଥିଲେ ଯଥାର୍ଥ କାରଣ, ଔଷଧାର୍ଥେ ତା ସେବନ ।
ଈଶ୍ୱର ଇଚ୍ଛା ଅଧୀନ, ରୋଗ କରେ ଉପଶମ । ୯ ।

ଏଣୁ ପ୍ରିୟ ବନ୍ଧୁଗଣ, ନିଶାରେ ନ ଦିଅ ମନ ।
ତେବେ ତୁମ୍ଭର ସମ୍ମାନ, ବଢ଼ିବ ଲୋକରେ ଜାଣ । ୧୦ ।

୭୦ । TUNE,—*Once in royal David's city.*

୧ ଆସ, ଆସ ପିଲ୍ଲମାନେ
ଗାଇବା ଆନନ୍ଦରେ,
ପ୍ରଭୁ ତାଙ୍କ ସ୍ୱର୍ଗ ସ୍ଥାନେ
ଶୁଣନ୍ତୁ ସନ୍ତୋଷରେ,
ସର୍ବଦାଇ ସମାନ
ଥାନ୍ତି ସେ ଦୟାବାନ ।

୨ ବାଲକାଳୁଁ ଶେଷ ଯାଏ
ଦେହ ପୁଣି ଆତ୍ମାରେ,
ଆଶୀର୍ବାଦ ଯେତେ ଥାଏ
ଦଅନ୍ତି ବାହୁଲ୍ୟରେ,
ସର୍ବଦାଇ ।

୩ ପାପିମାନଙ୍କୁ ଅନାଇ
ଦୟାପୂର୍ଣ୍ଣ ଚିତ୍ତରେ,
ପାପଠାରୁ ମୁକୁଳାଇ
ନେଲେ ମୁକ୍ତି ମାର୍ଗରେ,
ସର୍ବଦାଇ ।

୪ ଯୀଶୁ ପାପ ଭାର ନେଲେ
ଟଙ୍ଗା ହେଲେ କ୍ରୁଶରେ,
ତହୁଁ ପାପିଙ୍କି ସେ ଦେଲେ
ଅଧିକାର ସ୍ୱର୍ଗରେ,
ସର୍ବଦାଇ ।

୫ ଧର୍ମଆତ୍ମା ଦାନ ଦେଇ
ବାସସିବ ମନରେ,

ଧର୍ମ ବାଟେ ନିତ୍ୟ ନେଇ
ଅଣନ୍ତୁ ସୁଶାନ୍ତିରେ,
ସର୍ବଦାଇ ।

୭ ସଦାବେଳେ ସଙ୍ଗୀ ହେବେ
ପୁଣି ଯାତ୍ରା ଶେଷରେ,
ସ୍ୱର୍ଗପୁରେ ସ୍ଥାନ ଦେବେ
ତାହାଙ୍କ ଶ୍ରୀ ସମ୍ମୁଖରେ,
ସର୍ବଦାଇ ।

[ପି. ଇ. ହେବରଲେଟ ।

୭୧ । TUNE—*Regent's Square.*

ଜ୍ୟୋତିର୍ମୟ ସ୍ୱର୍ଗସ୍ଥାନେ । ତେଜୋମୟ ବେଶରେ
କୋଟି କୋଟି ଦୂତମାନେ । ଈଶ୍ୱରଙ୍କ ସମ୍ମୁଖରେ
"ହାଲେଲୁୟା, ହାଲେଲୁୟା" । ବୋଲୁଥାନ୍ତି ଗୀତରେ । ୧ ।

ଦୂତମାନେ ଦିବ୍ୟସ୍ଥାନେ । ଗାଉଥାନ୍ତି ନିତ୍ୟରେ
ପୃଥିବୀରେ ସାଧୁମାନେ । ଯୋଗ ଦେଇ ଗୀତରେ
"ହାଲେଲୁୟା, ହାଲେଲୁୟା" । ବୋଲନ୍ତି ଉଲ୍ଲାସରେ । ୨ ।

ପୁଣି ସେହି ସ୍ୱର୍ଗସ୍ଥାନେ । ଈଶ୍ୱରଙ୍କ ସମ୍ମୁଖରେ
କେତେ ପିଲାପିଲିମାନେ । ଦୂତ ଦଳ ମେଳରେ
"ହାଲେଲୁୟା, ହାଲେଲୁୟା" । ବୋଲୁଥାନ୍ତି ସୁସ୍ୱରରେ । ୩ ।

ସେହିରୂପେ ଏହି ସ୍ଥାନେ । ଈଶ୍ୱରଙ୍କ ସମ୍ମୁଖରେ
ଏତେବେଳେ ଆମ୍ଭେମାନେ । ସେହି ଗୀତ ଗାନରେ
"ହାଲେଲୁୟା, ହାଲେଲୁୟା" । ବୋଲିବା ଉଲ୍ଲାସରେ । ୪ ।

ଦୂତମାନେ ସ୍ୱର୍ଗସ୍ଥାନେ । ଗାଉଥାନ୍ତି ନିତ୍ୟରେ
ଏଣୁ ଯେତେ ପ୍ରାଣିମାନେ । ପୃଥିବୀର ସୀମାରେ
"ହାଲେଲୁୟା, ହାଲେଲୁୟା" । ବୋଲନ୍ତୁ ନିରନ୍ତରେ । ୫

[ପି. ଇ. ହେବରଲେଟ ।

*Temperance Hymn.*

୬୬ ନିଶା ବଡ ଦୁଃଖ ଦାୟିନ୍ତୀ ।
ତା ଫାନ୍ଦେ ପଡଲେ ମୁକ୍ତି ନାହିଁନ୍ତୀ । ଘୋଷା ।

ତା ମୋହିନୀ ଶକ୍ତି ବଳିଏ ହରେ ସର୍ବ ସୌଭାଗ୍ୟ ବଳ ।
ବାଟ ପାର ପର ଦରିଦ୍ରତା ଘେର ଭିକ୍ଷୁକର ଦଶା ସାର ହେବନ୍ତୀ । ୧ ।

ନିଶା ସେବ ହୋଇଲେ ଜନ ହରଇ ତାର ବୁଦ୍ଧି ଜ୍ଞାନ ।
ପଶୁପର ସେହି ଜଗତରେ ରହି ଧର୍ମାଧର୍ମ ଭେଦ କଛି ନାହିଁନ୍ତୀ । ୨ ।

ନିଶାଖୋର ଅଟେ ନିଷ୍ଠୁର ନାହିଁ ଚିନ୍ତା ପରଜନର ।
ଅନ୍ନବସ୍ତ୍ରହୀନେ ମଲେ ବା ସେମାନେ ତା ନିଶା ସେବନ ମୂଳ ଅଟେନ୍ତୀ । ୩

ନିଶା ପିସାଚିର ହାବୁଡେ ପଡ ଗଲେ କେହିବା ଥରେ ।
ଦେହ ଆତ୍ମା ଦୁଇ ଦେବଟି ହରଇ ଶଯ୍ତାନବଶେ ନିତ୍ୟ ରହନ୍ତୀ । ୪ ।

ନିଶାଖୋର ମନୁଷ୍ୟଠାରେ କେହି କେବେ ପ୍ରତ୍ୟୟ ନ କରେ ।
ପାଣିଗାର ସମ ତା ପ୍ରତିଜ୍ଞାମାନ ଯେତେ ସତ୍ୟ ହେଉ ସାର ନାହିଁନ୍ତୀ । ୫ ।

ନିଶା ସବୁ ପାପର ମୂଳ ଈଶ୍ୱରଙ୍କ କ୍ରୋଧର ସ୍ଥଳ ।
ତା ଫାନ୍ଦେ ପଡଣ ବହୁ୨ ଜନ ଅନନ୍ତଜୀବନ ହରାଇଲେନ୍ତୀ । ୬ ।

ନିଶାପର ଭ୍ରାତୃସଙ୍ଗେ ପ୍ରୀତଭାବ କରିଲେ ରଙ୍ଗେ ।
ଶେଷେ ନିଶା ଧର କଣ୍ଠେ ୨ ନରକ ଅନଳେ ଫିଙ୍ଗି ଦେବନ୍ତୀ । ୭ ।

[ବାଳକୃଷ୍ଣ ରଥ ।

---

୬୩ *Tune—The great Physician.*

୧ ହେ ପିଲାମାନେ ସମସ୍ତେ । ପବିତ୍ର ଆତ୍ମାଠାରେ
ଆଶିଷ୍ୟ ଏହି ମାଗ ହେ । ଏକାନ୍ତ ପ୍ରାର୍ଥନାରେ
ତ୍ରାଣଜ୍ଞାନ ଦେଉନ୍ତୁ । ସଙ୍ଗେ ସଙ୍ଗେ ହେଉନ୍ତୁ
ପୁଣି ଶେଷେ ନେଉନ୍ତୁ । ଦିବ୍ୟ ସ୍ୱର୍ଗପୁରେ ।

୨ ହେ ଜ୍ୟୋତିର୍ମୟ ରାଜନ । ଏ ଘୋର ଅନ୍ଧକାରେ
ସେ ଜ୍ୟୋତିର ପ୍ରକାଶନ । କରାଉନ୍ତୁ ସଂସାରେ
ତ୍ରାଣଜ୍ଞାନ, ଇତ୍ୟାଦି

୩ ହେ ଜ୍ଞାନଦାତା ରାଜନ । ଅଜ୍ଞାନ ଲୋକଠାରେ
ସଦ୍‌ଜ୍ଞାନକୁ ଉତ୍ଥାପନ । କରାଅ ସତ୍ୟତାରେ
ତ୍ରାଣଜ୍ଞାନ, ଇତ୍ୟାଦି

୪ ହେ ଶାନ୍ତିଦାତା ରାଜନ । ବିରାଜନ୍ତୁ ସଂସାରେ
ଓ ଶାନ୍ତିମନ୍ତ୍ର ଶାସନ । ବତାଅ ସବୁଠାରେ
ତ୍ରାଣଜ୍ଞାନ, ଇତ୍ୟାଦି

୫ ହେ ଅଗ୍ନିରୂପୀ ରାଜନ । ଏବେ ନରଗଣଠାରେ
ପବିତ୍ର ରାଜ୍ୟ ସ୍ଥାପନ । କରାଉନ୍ତୁ ସଂସାରେ
ତ୍ରାଣଜ୍ଞାନ, ଇତ୍ୟାଦି

[ପି. ଇ. ହେବର୍‌ଲେଟ ।

---

*Temperance Hymn.*

୭୪ । ସ୍ୱର—ଅସ ପିଲାମାନେ ଗାଇବା ଆନନ୍ଦରେ ।

ଅହେ ବନ୍ଧୁ ଯୁବାଗଣ ଶୁଣ ମୋ ନିବେଦନ
ନିଶା ଶତ୍ରୁ ସଙ୍ଗେ ରଣ କର ଅସ ବହନ ।
ହୁଅ ହେ ସଚେତନ ଅସ ଆସ ବହନ ! ୧ ।

ନିଶା ଶତ୍ରୁ ଯେଉଁଠାରେ କରଇ ପଦାର୍ପଣ ।
ଦୁଃଖ ଶୋକ ସେହିଠାରେ ନିଶ୍ଚେ କରେ ଗମନ ।
ହୁଅ ହେ ସଚେତନ ଛାଡ ନିଶା ସେବନ । ୨ ।

ଅପାର ଅପାର ଧନ ଥିଲେହେଁ ତୁମ୍ଭଠାରେ ।
ନିଶା ତାହାକୁ ହରଣ କରିବ ସମୟରେ ।
ହୁଅ ହେ ସଚେତନ ହୋଇବ ଧନବାନ । ୩ ।

ଲୋପ ହୁଏ ବୁଦ୍ଧି ଜ୍ଞାନ କଲେ ନିଶା ସେବନ ।
ଅଳ୍ପାୟୁ ହୋଇ ବହନ ପରଲୋକେ ଗମନ ।
ହୁଅ ହେ ସଚେତନ ହୋଇବ ଜ୍ଞାନବାନ । ୪ ।

ନିଶାରେ ମତ୍ତ ଯେ ଜନ ନୁହେ ସେ ଭାଗ୍ୟବାନ ।
ତାର ସ୍ତ୍ରୀ ସନ୍ତାନଗଣ ଦୁଃଖେ କାଟନ୍ତି ଦିନ ।
ଶୁଅ ହେ ସଚେତନ ତହିଁ ନ ଦିଅ ମନ । ୧ ।

ମଦୁଆଙ୍କ ସଙ୍ଗେ ସଙ୍ଗ ନ କର ବନ୍ଧୁଗଣ ।
ନିଶା ନିଶେଧକ ସଙ୍ଗ କର ଆସି ବନ୍ଧନ ।
ଶୁଅ ହେ ସଚେତନ ନ ହରଅ ସମ୍ମାନ । ୨ ।

ନ ଯାଅ ବନ୍ଧୁ ନ ଯାଅ ନ ଯାଅ ନିଶା ପାଶ ।
ତହିଁରେ ମନ ନ ଦିଅ ଅସ ଖ୍ରୀଷ୍ଟଙ୍କ ପାଶ ।
ହୋଇବ ଭାଗ୍ୟବାନ ସୁଖେ କାଟିବ ଦିନ । ୩ ।

[ପରମାନନ୍ଦ ଦାସ ]

---

(ପିଲାଙ୍କର ପ୍ରାର୍ଥନା ।)

୭୫ । Tune—"*Gracious Spirit Dwell in me.*"

ଯୀଶୁ ଥାଇ ସ୍ୱର୍ଗରେ ପିଲାଙ୍କର ଉପରେ
ପକାଅ କୃପାଦୃଷ୍ଟି ଶୁଣ ବିନତି ସ୍ତୁତି
କର ତାହା ଗ୍ରହଣ
ନିଜ ନାମ କାରଣ । ୧ ।

ସ୍ୱର୍ଗ ତୁମ୍ଭର ଧାମ ତୁମ୍ଭେ ସର୍ବପ୍ରଧାନ
ତଥାପି ଶିଶୁ ପ୍ରତି ତୁମ୍ଭର ସ୍ନେହ ଅତି
କେବେ ତୁମ୍ଭେ ଅଗ୍ରାହ୍ୟ
ଶିଶୁଙ୍କୁ କର ନାହିଁ । ୨ ।

ସମସ୍ତଙ୍କର ହର ଅଛ ହସ୍ତେ ତୁମ୍ଭର
ତୁମ୍ଭର ଅନୁଗ୍ରହ ସର୍ବୁଠୁଁ ବାଞ୍ଛନୀୟ
କୃପେ ତା ବିହନେ
ବଞ୍ଚିବୁଁ ଏ ଜୀବନେ । ୩ ।

ମନଫେରାଣ କର   ଯୌବନେ ଦାନ କର
ଏହି ବାଲ୍ୟ କାଳରୁ   ତବ କରୁଣା ଯୋଗରୁ
ନିତ୍ୟ ଧର ସ୍ୱହସ୍ତେ
ଚଳାଅ ଧର୍ମ ପଥେ । ୪ ।

ଅତି ଘୋର ସଂସାର   ତହିଁ ଶତ୍ରୁ ଅପାର
ଦୁର୍ବଳ ଶିଶୁ ଅମ୍ଭେ   କୋଳରେ ଧର ତୁମ୍ଭେ
ତୁମ୍ଭ କୋଳରୁ କେହି
କେବେ ନ ପାରେ ନେଇ । ୫ ।

ତବ କରୁଣା ପ୍ରାପ୍ତ   ହେଲେ ହୋଇବା ତୃପ୍ତ
ଅଭାବ ଦୂର ଯିବ   ଅନ୍ୟାଶା ନ ରହିବ
ଘଟିଲେ ଯା ଘଟିବ
ଭୟ କିଛୁ ନୋହିବ । ୬ ।

[ପ୍ରେମ ସାହୁ ।

୭୨ ।

TUNE—*Rosseau.*

ହେ ଯିହୁହା ତୁମ୍ଭ ସ୍ତୁତି ।
କରୁ ମର୍ତ୍ତ୍ୟ ଭୁବନ ।
ଯେହେତୁ ତୁମ୍ଭ ପ୍ରତି ଦୟା ।
ସ୍ୱର୍ଗେ ହୁଏ ଗାୟନ ।
ହାଲିଲୂୟା ।
କରନ୍ତୁ ସଂକୀର୍ତ୍ତନ । ୧ ।

ପିତା ପୁତ୍ର ଧର୍ମଆତ୍ମା ।
ତୁମ୍ଭ ରାଜ୍ୟ ଅଟଳ ।
ଏକେ ତିନ ତିନେ ଏକ ।
ତବ ପ୍ରେମ ଅପାର ।
ହାଲିଲୂୟା ।
ଧନ୍ୟ ପରମେଶ୍ୱର । ୨ ।

୭୭ । TUNE—*Sharon.* 8-7

ହେ ଓଡ଼ିଶା ପ୍ରିୟଦେଶ
ତୁମ୍ଭ ଭାବୀଦର୍ଶନେ ।
ସତ୍ୟ ଜଗନ୍ନାଥ ରାଜା
ବସେ ପୁଣ୍ୟ ସଦ୍ମରେ । ୧ ।

ଭୁବନେଶ୍ୱର ନିବାସୀ
ଦେବପୂଜା ଛାଡ଼ିବେ ।
ପୁଣି ଯୀଶୁ ଖ୍ରୀଷ୍ଟ ସେଠି
ଥିବେ ରାଜପଦରେ । ୨ ।

ଯହିଁ ତାହିଁ ଖ୍ରୀଷ୍ଟିୟାନ
ପଦଗାମୀ ହୋଇଣ ।
ତହିଁ କ୍ରୁଶରୂପ ଧ୍ୱଜା
ହୋଇବ ପ୍ରକାଶନ । ୩ ।

ସ୍ୱର୍ଗୀୟ ନିର୍ମଳ ନଦୀ
ଏକମାତ୍ର ତୀର୍ଥ ସ୍ଥାନ୍ ।
ଏକମାତ୍ର ଜାତି ହେବ
ଭ୍ରାତୃବର୍ଗ ଖ୍ରୀଷ୍ଟିୟାନ୍ । ୪ ।

[ଯେ. ଡ. ପାଇକ୍ ।

୭୮ । *The Doxology—L. M.*

ପୃଥିବୀରେ ଯେତେ ପ୍ରାଣି
ସ୍ୱର୍ଗୀୟ ଦୂତ ବାହିନୀ ।
ପିତା ପୁତ୍ର ଧର୍ମାତ୍ମାଙ୍କ
ପ୍ରଶଂସା ଗାନ କରନ୍ତୁ ।

[ପି. ଇ. ହେବର୍‌ଲେଟ ।

ORISSA MISSION PRESS.—J. G. PIKE.